# ଜହ୍ନ ମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗିରେଡ୍ଡୀ

ଏହି ସଂଖ୍ୟାରୁ 'ଜହ୍ନମାମୁଁ' ଦ୍ୱାଦଶ ବର୍ଷରେ ଉପନୀତ ହେଲା । ନିୟମିତ ଭାବରେ ଏକ ପତ୍ରିକା ପ୍ରକାଶ କରିବାରେ ବାଧା ପ୍ରତିବନ୍ଧକ କମ୍ ନୁହେଁ । ଏକ ଦିଗରେ ପ୍ରୟୋଜନ ଆନ୍ତରିକତା ଓ ନିଷ୍ଠା; ଅନ୍ୟ ଦିଗରେ ପ୍ରୟୋଜନ ଜନ-ସମର୍ଥନ । ଆମ ତରଫରୁ ଆମେ ଏତିକି ମାତ୍ର କହିପାରୁଁ ଯେ ଆମେ ଆନ୍ତରିକ ତଥା ନିଷ୍ଠାପର ହେବାକୁ ଚେଷ୍ଟା କରୁଛୁଁ । ତେବେ ଅମୂଲ୍ୟ ଜନ-ସମର୍ଥନ ଯେ ଆମକୁ ମିଳୁଛି, ସେଥିରେ ଆମେ ନିଃସନ୍ଦେହ । ଏହି ଅବସରରେ 'ଜହ୍ନମାମୁଁ' ତା'ର ପାଠକ-ପାଠିକା ଓ ଶୁଭେଚ୍ଛୁମାନଙ୍କୁ ଅଭିବାଦନ ଜଣାଉଛି ।

ବର୍ଷ : ୧୨ ଜୁଲାଇ ୧୯୭୮ ଅଙ୍କ : ୧

ପ୍ରତି ସଂଖ୍ୟା : ଟ ୧.୨୫ : : ବାର୍ଷିକ ମୂଲ୍ୟ : ଟ ୧୫.୦୦








# ଅମର ବାଣୀ

ମୁଖଂ ପଦ୍ମଦଲାକାରଂ ବାଣୀ ଚନ୍ଦନ ଶୀତଲା ।
ହୃଦୟଂ କର୍ତ୍ତରୀତୁଲ୍ୟଂ ତ୍ରିବିଧଂ ଧୂର୍ତ୍ତଲକ୍ଷଣମ୍ ॥ ॥ ୧ ॥

[ମୁହଁ ପଦ୍ମ ଭଳି ସରସ ଦିଶୁଥାଏ; କଥା ମନେ ହୁଏ ଚନ୍ଦନ ଭଳି ଶୀତଳ; କିନ୍ତୁ କଇଁଚି ଭଳି ନିର୍ମମ ହେଲ ହୃଦୟ—ଧୂର୍ତ୍ତର ଏଇ ତିନି ଲକ୍ଷଣ ।]

ମୂର୍ଖସ୍ୟ ପଞ୍ଚ ଚିହ୍ନାନି ଗର୍ବୀ ଦୁର୍ବଚନୀ ତଥା ।
ହଠୀ ଚାପ୍ରିୟବାଦୀ ଚ ପରୋକ୍ତଂ ନୈବ ମନ୍ୟତେ ॥ ॥ ୨ ॥

[ମୂର୍ଖର ପାଞ୍ଚ ଲକ୍ଷଣ ହେଲ : ସେ ଗର୍ବୀ, ଦୁର୍ବଚନୀ, ଜିଦ୍‌ଖୋର, ପ୍ରୀତିଶୂନ୍ୟ, ଏବଂ ଅନ୍ୟର ମତାମତ ପ୍ରତି ବେପରୁଆ ।]

ବୋଦ୍ଧାରୋ ମତ୍ସରଗ୍ରସ୍ତାଃ ପ୍ରଭବଃ ସ୍ମୟଦୂଷିତାଃ ।
ଅବୋଧୋପହତାଶ୍ଚାନ୍ୟେ ଜୀର୍ଣ୍ଣମଙ୍ଗେ ସୁଭାଷିତମ୍ ॥ ॥ ୩ ॥

[ପାଠ ପଢ଼ୁଆ ଲୋକେ ଈର୍ଷ୍ୟାରେ ବୁଡ଼ି ରହିଛନ୍ତି; କ୍ଷମତାଶାଳୀ ଲୋକେ ଅହଙ୍କାର ଦ୍ୱାରା ଦୂଷିତ; ଅନ୍ୟମାନେ ତ ଅବୋଧ । ହିତ କଥା ଶୁଣିବ କିଏ ?]

ମୂର୍ଖ ଓ ଅବିବେକୀ



# ପଞ୍ଚତନ୍ତ୍ର

[ ୧୪ ]

କଥା କୁହା ଗୁମ୍ଫାର ଗଳ୍ପଟି ବିବୃତ କରିସାରି, ରକ୍ତାକ୍ଷ ନିଜ ଅନୁଚରମାନଙ୍କ ସହ ଅନ୍ୟ ଏକ ପାହାଡ଼କୁ ଚାଲିଯାଇ ସେଠାରେ ନିରାପଦରେ ରହିଲା ।

ରକ୍ତାକ୍ଷ ଚାଲିଯିବାରୁ ସ୍ଥିରଜୀବୀର ଆନନ୍ଦ କହିଲେ ନ ସରେ । ସେ ନିଜକୁ କହୁଥାଏ, "ସବୁକିଛି ମୋର ଅନୁକୂଳ । ଏକମାତ୍ର ରକ୍ତାକ୍ଷହିଁ ଥିଲା ପେଚାମାନଙ୍କ ଭିତରେ ବିବେକଶୀଳ । ଆଉସବୁ ବୋକା । ଦୂରଦ୍ରଷ୍ଟା ରକ୍ତାକ୍ଷ ଏଠାରେ ଥିଲେ ମୋ ଯୋଜନା ସହଜରେ ସଫଳ ହୁଅନ୍ତା ନାହିଁ । ଆଉ ଏ ପେଚକ-ରାଜା କେଡ଼େ ହତଭାଗା ! ଯିଏ ବିଜ୍ଞ ମନ୍ତ୍ରୀର ପରାମର୍ଶ ସ୍ୱୀକାର ନ କରି ମୋ ଭଳି ପ୍ରତାରକକୁ ଆଶ୍ରୟ ଦିଏ, ତା' ସର୍ବନାଶ ନ ହେବ ତ ହେବ କାହାର ?"

ସ୍ଥିରଜୀବୀ ସବୁଦିନେ ବଣ ଭିତରୁ କିଛି କିଛି ଶୁଖିଲା କାଠି ବା ପତ୍ର ସଂଗ୍ରହ କରି ନେଇଆସେ । ସେ ନିଜେ ରହୁଥାଏ ଗୁମ୍ଫାର ସବୁଠୁ ସମ୍ମୁଖବର୍ତ୍ତୀ ଅଂଶରେ । ସେଠାରେ ସେ ସେସବୁ ଜମା କରେ । ଗଦାଏ ଶୁଖିଲା ପତ୍ର ଜମା ହୋଇସାରିବା ପରେ ଗୁମ୍ଫା ଭିତରେ ଏଣେ ତେଣେ ମଧ୍ୟ ସେ କିଛି କିଛି ପତ୍ର ଜମା କଲା । ପେଚାମାନଙ୍କ ଭୋଳା ରାଜା ଓ ମୂର୍ଖ ମନ୍ତ୍ରୀମାନେ ତା'ର ଏଭଳି କାର୍ଯ୍ୟକଳାପ ପ୍ରତି ଧ୍ୟାନ ଦେଲେ ନାହିଁ ।

ଦିନେ ପ୍ରତ୍ୟୁଷରେ ସ୍ଥିରଜୀବୀ ଯାଇ କାକରାଜା ମେଘବର୍ଣ୍ଣଙ୍କୁ ସାକ୍ଷାତ କଲା । ମେଘବର୍ଣ୍ଣ ଖୁସୀ ହୋଇ କହିଲା, "ଆସ, ଆସ, ବସ । ବହୁଦିନ ପରେ ତୁମ ସାକ୍ଷାତ ମିଳୁଛି । ସମାଚାର କ'ଣ କୁହ ।"

"ବର୍ତ୍ତମାନ ବେଶୀ ଗପସପ ହେବାକୁ ସମୟ ନାହିଁ । ପେଚାମାନେ ଗୁମ୍ଫା ଭିତରେ ଶୋଇଛନ୍ତି । ଏହା ଏକ ସୁବର୍ଣ୍ଣ ସୁଯୋଗ । ଆପଣ ଓ ଅନ୍ୟାନ୍ୟ କ୍ଷିପ୍ର-ଗତି କାକମାନେ ଖଣ୍ଡିଏ ଖଣ୍ଡିଏ



ଖଣ୍ଡିଏ ଜ୍ୱଳନ୍ତ କାଠି ଧରି ପେଚାମାନଙ୍କ ଗୁମ୍ଫା ନିକଟରେ ପହଞ୍ଚିଲେ ଓ ସନ୍ତର୍ପଣରେ ପ୍ରବେଶ ପଥ ଅତିକ୍ରମ କରି ସେଠାରେ ଜମା ହୋଇଥିବା ପତ୍ରଗଦାରେ ନିଆଁ ଧରାଇଦେଲେ । ନିମିଷକେ ତାହା ଦାଉ ଦାଉ ଜଳିଉଠିଲା । ପେଚାମାନେ ଚିତ୍କାର କଲେ, କିନ୍ତୁ ବାହାରି ଆସି ପାରିଲେ ନାହିଁ । ସମସ୍ତେ ମଲେ ।

ତା'ପରେ ମେଘବର୍ଣ୍ଣ ସିଂହାସନରେ ବସି-ଥାଇ ସ୍ଥିରଜୀବୀକୁ ପଚାରିଲା, "ମହାମନ୍ତ୍ରୀ ! ଏଥର ତୁମ ସଫଳ ଅଭିଯାନର ବୃତ୍ତାନ୍ତ ଆମକୁ ଶୁଣାଅ ।"

ସ୍ଥିରଜୀବୀ ଆମୂଳଚୂଳ ସବୁ ବର୍ଣ୍ଣନା କଲା ।

"ମହାମନ୍ତ୍ରୀ ! ତୁମେ ସବୁଦିନେ ପେଚାରାଜାକୁ ଯେମିତି ଅଭିବାଦନ କରୁଥିଲ ଓ ଖୁସୀ କରି ରଖିଥିଲ, ତାହା କମ୍ ଆଶ୍ଚର୍ଯ୍ୟଜନକ କଥା ନୁହେଁ ।" ମେଘବର୍ଣ୍ଣ କହିଲା ।

"ମହାରାଜ ! କାମ ହାସଲ କରିବାକୁ ହେଲେ ସେପରି ନକରି ଉପାୟ କ'ଣ ? ଅର୍ଜୁନ ଭଳି ମହାବୀରଙ୍କୁ ତ ପୁଣି ବିରାଟ ରାଜାଙ୍କ ପ୍ରାସାଦରେ ସ୍ତ୍ରୀ ସାଜି ରହିବାକୁ ପଡ଼ିଥିଲା, ଭୀମଙ୍କୁ ପୁଆରୀ ଓ ଯୁଧିଷ୍ଠିରଙ୍କୁ ବୁଢ଼ା ବ୍ରାହ୍ମଣର ଅଭିନୟ କରିବାକୁ ପଡ଼ିଥିଲା ! ନକୁଳ ଓ ସହଦେବ ତ ପୁଣି ଗୋରୁ ଚରାଉଥିଲେ !" ସ୍ଥିରଜୀବୀ ବୁଝାଇଦେଲା ।

"ତୁମେ ବାସ୍ତବିକ କ୍ଷୁରଧାରରେ ଚାଲିପାରି ବୋଲି ମାନିବାକୁ ହେବ !" ମେଘବର୍ଣ୍ଣ କହିଲା ।

"ଆପଣ ଭୁଲ କହୁନାହାନ୍ତି । ପ୍ରଥମେ ପ୍ରଥମେ ମୋତେ ବହୁତ ସଜାଗ ରହିବାକୁ

ଜଳନ୍ତା କାଠି ସଂଗ୍ରହ କରି ତୁରନ୍ତ ଚାଲନ୍ତୁ । ପେଚାମାନଙ୍କ ଦୁର୍ଗର ଦ୍ୱାରଦେଶରେ ମୁଁ ଶୁଖିଲା ପତ୍ର ଜମା କରି ରଖିଛି । ସେଥିରେ ଅଗ୍ନି-ସଂଯୋଗ କରିଦେବେ । ଦ୍ୱାର ପାଖରେ ନିଆଁ ଜଳିଲେ ପେଚାମାନେ ଭିତରୁ ବାହାରି ଆସି-ପାରିବେ ନାହିଁ । ସମସ୍ତେ ମରିବେ । ଗୁମ୍ଫା ଭିତରେ ବି ଏଣେ ତେଣେ ପତ୍ର ଅଛି । ନିଆଁ ବ୍ୟାପିଯିବ ।"

"ତୁମେ ଏତେ କାଣ୍ଡ କଲ କିପରି ?" ରାଜା ପଚାରିଲା ।

"ସେସବୁ କଥା ପରେ । ବର୍ତ୍ତମାନ ବିଳମ୍ବ କରନ୍ତୁ ନାହିଁ ।" ସ୍ଥିରଜୀବୀ ତାଗିଦା ଦେଲା ।

କାକ-ରାଜା ମେଘବର୍ଣ୍ଣ ଏବଂ ତା'ର ସାହସୀ ଅନୁଚରମାନେ ନିଜ ନିଜ ଚଞ୍ଚୁରେ ଖଣ୍ଡିଏ

**ପଡ଼ିଥିଲା** । ତେବେ, ରକ୍ତାକ୍ଷ ଚାଲିଯିବା ପରେ ଆଉ ଅସୁବିଧା ହୋଇ ନାହିଁ । ଅନ୍ୟ ସମସ୍ତେ ଥିଲେ ମୂର୍ଖ । ମୂର୍ଖଙ୍କୁ ପ୍ରଶଂସା ଦ୍ୱାରା, ପେଟୁକୁ ଭୋଜନ ଦ୍ୱାରା, ଲୋଭୀଙ୍କୁ ଉତ୍କୋଚ ଓ ଅଭାବ-ଗ୍ରସ୍ତଙ୍କୁ ଋଣ ଦ୍ୱାରା ଏବଂ ଗୁଣୀମାନଙ୍କୁ ପୁରସ୍କାର ତଥା ରାଜାଙ୍କୁ ବିନୟ ଦ୍ୱାରା ଆପ୍ୟାୟିତ କରା-ଯାଇପାରେ ଓ ନିଜ କାମ ହାସଲ କରିନିଆ-ଯାଇପାରେ । ସାଧାରଣ ମୂର୍ଖଙ୍କୁ ଦଗା ଦେବା କେଉଁ କଥା ? ମନ୍ଦବିଷ ସର୍ପ କେତେ ସହଜରେ ଭୁଲିଇ ନ ଥିଲା !"

"ସେ ଘଟଣାଟି କ'ଣ ଟିକିଏ କହିଲ !" ମେଘବର୍ଣ୍ଣ ଆଗ୍ରହ ପ୍ରକାଶ କଲା । ସ୍ଥିରଜୀବୀ ସେଇଠୁ ଗପିଲା :

ମନ୍ଦବିଷ ନାମରେ ସାପଟାଏ ଥାଏ । ସେ ବୁଢ଼ା ହୋଇ ଆଉ ଆହାର ଅନ୍ୱେଷଣରେ ଧାଁ ଧପଡ଼ କରିପାରୁ ନ ଥାଏ । ଗୋଟାଏ ସରୋବର ପାଖରେ ଯାଇ ସ୍ଥିର ହୋଇ ରହି-ଥାଏ । ଅନେକ ସମୟ ଧରି ସେ ସେମିତି ରହିବାର ଦେଖି ବେଙ୍ଗଟାଏ ତାକୁ ପଚାରିଲା, "ଆଜି ଶିକାର କରିବାକୁ ଯିବେ ନାହିଁ କି ?

ସାପ ଉତ୍ତର ଦେଲା, "ଛାଡ଼ ସେ କଥା ! ଆଉ ଶିକାର କରିବା ଏ ଜନ୍ମରେ ହେବ ନାହିଁ । ଗତ କାଲି ରାତିରେ ଗୋଟାଏ ବେଙ୍ଗକୁ ଧରି-ବାକୁ ଗଲି ଯେ ବେଙ୍ଗଟି ଏକ ପୋଖରୀ ଭିତରକୁ ଡେଇଁପଡ଼ିଲା । ପୋଖରୀ କୂଳରେ କେତେଜଣ ବ୍ରାହ୍ମଣ ବସି ମନ୍ତ୍ରପାଠ କରୁଥିଲେ । ସେମାନଙ୍କ ଭିତରେ ଥିଲା ବାଳକଟାଏ । ତା' ଗୋଡ଼କୁ ମୁଁ ବେଙ୍ଗ ବୋଲି ମଣି ଚୋଟେ ଦେଲି । ସେ ମରିଗଲା । ବ୍ରାହ୍ମଣମାନେ ମୋତେ ଅଭିଶାପ ଦେଲେ କି ସାରା ଜୀବନ ଏଣିକି ମୋତେ ବେଙ୍ଗମାନଙ୍କୁ ପିଠିରେ ବସାଇ ବୁଲାଇବାକୁ ପଡ଼ିବ !"

ବେଙ୍ଗଟି ଆନନ୍ଦରେ ସରୋବର ଭିତରର ସବୁ ବେଙ୍ଗ ଆଗରେ ଏ କଥା ପ୍ରଚାର କରି-ଦେଲା । ସାପପିଠିରେ ଚଢ଼ି ବୁଲିବାର ସୁଯୋଗ ଗ୍ରହଣ କରିବା ନିମନ୍ତେ ବେଙ୍ଗମାନଙ୍କ ମଧ୍ୟରେ ପ୍ରତିଯୋଗିତା ଲାଗିଗଲା । ପ୍ରଥମେ, ସାପର ଫଣା ପାଖରେ ଆସନ ଗ୍ରହଣ କଲା ବେଙ୍ଗରାଜା । ପାଖରେ ବସିଲା ମନ୍ତ୍ରୀ । ତା'ପରେ ଅମାତ୍ୟ-ମାନେ ଧାଡ଼ି ଧରି ବସିଗଲେ !



# ଗତିର ସ୍ଥିର ଚିତ୍ର

ଶିଳା ଗାତ୍ରର ଏହି ଶିଳ୍ପରେ ଅଶ୍ୱର ଗତିକୁ ଯେପରି ଜୀବନ୍ତ ଭାବରେ ଅତୀତର ଶିଳ୍ପୀମାନେ ଫୁଟାଇ ପାରିଛନ୍ତି, ତାହା କୌଣସି ଜୀବନ୍ତ ବେଗବାନ୍ ଅଶ୍ୱର ଭ୍ରମ ସୃଷ୍ଟି କରେ ।

ଏ ଚିତ୍ର ସୁଦୂର ଅତୀତର ଆସିରୀୟ ସଭ୍ୟତାର ସ୍ମୃତି ବହନ କରୁଛି । ଆସିରୀୟ ସାମ୍ରାଜ୍ୟର ଶେଷ ପ୍ରତାପଶାଳୀ ନରପତି ଥିଲେ ଅସୁର ବନିପାଲ । ସେ ଖ୍ରୀଷ୍ଟପୂର୍ବ ୬୬୮ରୁ ୬୨୬ ଯାଏ ଶାସନ କରିଥିଲେ । ଏହାଙ୍କ ଆକ୍ରମଣରେ ଅତିଷ୍ଠ ହୋଇ ଉଠୁଥିଲେ ସମକାଳୀନ ରାଜନ୍ୟ ବର୍ଗ । ଚିତ୍ରରେ ସେହି ସମ୍ରାଟ ଶିକାର ଅଭିଯାନରେ ବାହାରିଥିବାର ଦୃଶ୍ୟ ଦେଖିବାକୁ ମିଳୁଛି । ତାଙ୍କ ମୃତ୍ୟୁର ଅଳ୍ପ କେତେବର୍ଷ ଭିତରେ ଆସିରୀୟ ସାମ୍ରାଜ୍ୟର ପତନ ହୋଇଥିଲା ।





# ମାୟା ସରୋବର

[ ୨୯ ]

ତନ୍ତ୍ରସାଧକ ଯେତେବେଳେ ଶୁଣିଲେ ଯେ ଜୟଶୀଳଙ୍କୁ ମାୟା-ସରୋବରେଶ୍ୱର ନିଜ ସହ କୁଆଡ଼େ ନେଇଯାଉଛନ୍ତି, ସେତେବେଳେ ସେ ସେମାନଙ୍କୁ ଅନୁସରଣ କରିବାକୁ ବାହାରିଲେ । ଜଳ ରାକ୍ଷସମାନଙ୍କ କଥା ସେତିକବେଳେ ସେମାନେ ଶୁଣିଲେ । ରାଜା କନକାକ୍ଷ ଏବଂ ତନ୍ତ୍ର-ସାଧକ ଯାଉଁ ଯାଉଁ ଦେବଶର୍ମା ଓ ଅନ୍ୟମାନଙ୍କୁ ଭେଟିଲେ । ତା'ପରେ······]

ନରଭକ୍ଷୀମାନେ ଜଳରାକ୍ଷସମାନଙ୍କ ଭିତରୁ କେତୋଟିଙ୍କୁ ଧରି ଭୋଜନ କରିବା ମାନସରେ ସେମାନଙ୍କ ପଛରେ ଦୌଡ଼ୁଥିଲେ । କିନ୍ତୁ ଜଳରାକ୍ଷସମାନଙ୍କର ଗନ୍ତବ୍ୟସ୍ଥଳ କ'ଣ, ସେ ବିଷୟରେ ସେମାନଙ୍କର କୌଣସି ଧାରଣା ନ ଥିଲା ।

ସେତେବେଳେ ଯୋଡ଼ିଏ ଜଳରାକ୍ଷସ ଗୋଟିଏ ଗଛ ଉପରେ ଥାଇ ସବୁ ଘଟଣା ଲକ୍ଷ୍ୟ କରୁଥିଲେ । ଜଳରାକ୍ଷସ-ରାଜା ସେମାନଙ୍କୁ ସେଠାରେ ଲୁଚିରହି ଶତ୍ରୁପକ୍ଷର ସନ୍ଧାନ ନେବାକୁ ନିର୍ଦ୍ଦେଶ ଦେଇଥିଲା ।

ଗଛ ଉପରେ ଥିବା ଜଣେ ଜଳରାକ୍ଷସ ଅନ୍ୟଟିକୁ କହିଲା, "ଆମ ରାଜାଙ୍କ ଶତ୍ରୁପକ୍ଷର ବଳ କେତେ, ସେଇ କଥା ଜାଣିବା ଦରକାର ।



ପୁରର ସେନାପତି-ପୁତ୍ର ମଙ୍ଗଳବର୍ମା ।

ସେ ନିଜ ସାଥୀକୁ କହିଲା, "ଦେଖୁଛୁ ସେ ଚ୍ଛୋଟାଇ ଚ୍ଛୋଟାଇ ଚାଲୁଥିବା ଲୋକଟାକୁ ? ତାକୁ ଧରିନେଇ ଆମ ରାଜାଙ୍କ ପାଖରେ ହାଜର୍ କଲେ କିପରି ହୁଅନ୍ତା ? ବଣକୁ ଯେଉଁ ମଣିଷ-ରାଜା ଆସିଛନ୍ତି, ତାଙ୍କ ସୈନ୍ୟସଂଖ୍ୟା କଥା ଏହାକୁ ଧମକ ଚମକ ଦେଇ ବାହାର କରି ହୁଅନ୍ତା ।"

"ସେ କଥା ଠିକ୍, କିନ୍ତୁ ଏଠାରେ ରହି ସମସ୍ତଙ୍କ ଗତିବିଧି ଲକ୍ଷ୍ୟ କରିବା ନିମନ୍ତେ ଆମ ରାଜା ନିର୍ଦ୍ଦେଶ ଦେଇଛନ୍ତି ଯେ !" ଦ୍ୱିତୀୟ ଜଳ-ରାକ୍ଷସ କହିଲା ।

"ଏମାନେ ଯେ ମାୟା-ସରୋବରେଶ୍ୱରର ନିବାସ ଆଡ଼କୁ ଚାଲିଛନ୍ତି, ଏ କଥା ସ୍ପଷ୍ଟ । ତେଣୁ ଏଥିରେ ଆଉ କିଛି ରହସ୍ୟ ନାହିଁ । ଯାହାହେଉ, ତୁମେ ଏଠାରେ ରହି ସବୁ ଲକ୍ଷ୍ୟ କରୁଥାଅ । ମୁଁ ଯାଏ, ଏହାକୁ ନେଇଯାଇ ରାଜାଙ୍କ ପାଖରେ ହାଜର କରେ ।" ଏହା କହି ପ୍ରଥମ ଜଳରାକ୍ଷସ ଗଛ ଡାଳରୁ ଡେଇଁପଡ଼ି ମଙ୍ଗଳବର୍ମା ପଛରେ ଚାଲିଲା ।

ନିଜ ପଛରେ ବିପଦ ଆସୁଛି ବୋଲି ମଙ୍ଗଳ-ବର୍ମା ବା କିପରି ଜାଣନ୍ତା ? ଅନ୍ୟମାନେ ତା' କଥା ପାଶୋରିଦେଇ ଶୀଘ୍ର ଶୀଘ୍ର ଅଗ୍ରସର ହେଉଥିଲେ । ସେ ବିଚରା ପଛରେ ପଡ଼ଯାଇ-

ପୂର୍ବରୁ ଜଳାଶୟ ଭିତରେ ଯେଉଁ ଲଢ଼େଇ ହୋଇଥିଲା, ସେଥିରେ ମାୟା-ସରୋବରେଶ୍ୱରର ସେବକମାନଙ୍କୁ ଆମେ ମାରିପିଟି ନାକେଦମ୍ କରିଦେଇଥିଲୁଁ । କିନ୍ତୁ ଏଥର ସେମାନଙ୍କୁ ସହାୟତା କରିବା ପାଇଁ ଆଉ କିଏସବୁ ଆସି-ଛନ୍ତି ମନେହୁଏ ।"

କିନ୍ତୁ ଅନ୍ୟ ଜଳରାକ୍ଷସଟିର ଧ୍ୟାନ ଅନ୍ୟତ୍ର ନିବଦ୍ଧ ଥିଲା । ମାୟା-ସରୋବରେଶ୍ୱରକୁ ଅନୁ-ସରଣ କରୁଥିବା ନିଜ ଜାତିର ରାକ୍ଷସମାନଙ୍କୁ ସେ ଦେଖୁଥାଏ, ଆହୁରି ଦେଖୁଥାଏ, ଜଳରାକ୍ଷସ-ମାନଙ୍କ ପଛରେ ଗୋଡ଼ାଇଛନ୍ତି ନରଭକ୍ଷୀଦଳ । ପୁଣି କିଛି ପଛରେ ଚ୍ଛୋଟାଇ ଚାଲିଥାଏ ହିରଣ୍ୟ-

ଥିଲା । ତେବେ ସେ ମନେ ମନେ ଭାବୁଥାଏ, କୌଣସି ପ୍ରକାରେ ଲକ୍ଷ୍ୟସ୍ଥଳରେ ପହଞ୍ଚିଗଲେ ସେ ବି ଲଢ଼େଇରେ ଭାଗ ନେବ । ସାହସହିଁ ଅସଲ କଥା । କିଏ ଆଗେ ପହଞ୍ଚିଲା କିଏ ପଛେ ପହଞ୍ଚିଲା, ସେଇଟା ବଡ଼ କଥା ନୁହେଁ ।

ମଙ୍ଗଳବର୍ମା ଏଇଆ ଭାବି ଜୋର୍‌ରେ ଚାଲିବାକୁ ଚେଷ୍ଟା କରୁଥାଏ, ହଠାତ୍ ପଛରୁ କିଛି ଶବ୍ଦ ଶୁଣି ସେ ବୁଲିପଡ଼ି ଅନାଇଲା । ଦେଖିଲା, ଜଳରାକ୍ଷସଟିଏ ଗଦା ଉଞ୍ଚାଇ ତା' ଆଡ଼କୁ ଝପଟି ଆସୁଛି । ହଠାତ୍ ରାକ୍ଷସର ଗୋଡ ଖସିଯାଇ ସେ ପଡ଼ିଗଲା । ଗଦା ଛିଟିକି ପଡ଼ିଲା; ଗୋଡ଼ ଗୋଟାଏ ଗାତରେ ପଶିଯାଇଥାଏ । କଷ୍ଟ କରି ତାକୁ ବାହାର କରିବା ବେଳକୁ ତାହା ମକଚିଗଲା ।

"ମଲି, ମଲି, ମୋତେ କିଏ ଅଛ ରକ୍ଷା କର !" ଜଳରାକ୍ଷସ ଏଇଆ କହି ଆର୍ତ୍ତନାଦ କଲା ।

ମଙ୍ଗଳବର୍ମା ବୁଝିଲା ଯେ ସେ ଅଳ୍ପକେ ବର୍ତ୍ତିଗଲା । ସେ ଜଳରାକ୍ଷସ ପାଖକୁ ଯାଇ କହିଲା, "ମୋତେ ମାରିବାକୁ ଆସୁଥିଲୁ ପରା ! ବେଶ୍, ଠିକ୍ ଦଣ୍ଡ ପାଇଛୁ । ବର୍ତ୍ତମାନ ତୋତେ ରକ୍ଷା କରିବାକୁ ଏଠାରେ କେହି ନାହାଁନ୍ତି । ମୋ କଥାର ଉତ୍ତର ଦେଲେ ଔଷଧ ଦ୍ୱାରା ତୋତେ ସୁସ୍ଥ କରିଦେବି । କହ, କିଛିକାଳ ପୂର୍ବେ ମାୟା-

ସାରଥି କହିଲା, "ହଁ ସେଇଆ । କିନ୍ତୁ ତୁମେ ଆସ୍ତେ କଥା କୁହ । ଯମଦୂତ ପ୍ରାୟେ ମଣିଷଟାଏ ଗୋଟାଏ ନରବାନର ଆରୋହଣ କରି ଏଆଡ଼େ ଆସୁଛି । ତା' ସାଥିରେ କେତେଜଣ ସୈନ୍ୟ ଅଛନ୍ତି । ବୋଧହୁଏ, ଏ ଲୋକ ଆମର ଶତ୍ରୁ ଜୟଶୀଳର ବନ୍ଧୁ ତନ୍ତ୍ରସାଧକ ।"

ସେ କଥା ଶୁଣି ମଙ୍ଗଳବର୍ମା ଉତ୍ସାହ ଅନୁଭବ କଲା । ସେ ଭାବିଲା ସେ ଦଳରେ ବୈଦ୍ୟଦେବ ନାମରେ ପରିଚିତ ଦେବଶର୍ମା ଥିବେ । ତାଙ୍କ ସାଥିରେ ସେ ଶୀଘ୍ର ମାୟା-ସରୋବରରେ ପହଞ୍ଚିଯାଇପାରିବ ।

"ଶୁଣ ସାରଥି, ସେମାନେ ଆଉ ଆମର ଶତ୍ରୁ ହୋଇ ନାହାନ୍ତି । ତେବେ ସେମାନଙ୍କୁ ଆମର ମିତ୍ର ଭାବରେ ଗଣାଯିବ କି ନାହିଁ.

ସରୋବରେଶ୍ୱର ସହ ତୁମ ଜଳରାକ୍ଷସମାନଙ୍କର ଯେଉଁ ଲଢ଼େଇ ହୋଇଥିଲା, ସେଥିରେ କାହାର ଜିତାପଟ ହୋଇଥିଲା ?"

ଜଳରାକ୍ଷସ ଯନ୍ତ୍ରଣାରେ ଆଉ ଥରେ ଆର୍ତ୍ତନାଦ କରି କିଛି କହିବାକୁ ଗଲାବେଳକୁ ଗଛ ଉପରେ ଥିବା ତା' ସାଥିଟି ତା'ର ଅବସ୍ଥା ଦେଖି ଗଦା ଉଞ୍ଚାଇ ଦୌଡ଼ିଆସିଲା । ମଙ୍ଗଳବର୍ମାକୁ ଲକ୍ଷ୍ୟ କରି ସେ ଧମକ ଦେଲା, "ଶୁଣ ମାୟା-ସରୋବରେଶ୍ୱରର ସେବକ, ତୋତେ ଏହିକ୍ଷଣି ମୁଁ ଯମପୁରକୁ ପଠାଇବି ।"

ମଙ୍ଗଳବର୍ମା ସଙ୍ଗେ ସଙ୍ଗେ ନିଜ କର୍ତ୍ତବ୍ୟ ନିରୂପଣ କରି ଗୋଟିଏ ହାତରେ ଲଠି ମୁଠାଇ



ଧରି ଅନ୍ୟ ହାତରେ ଚଟାପଟ୍ ତରବାରି ବାହାର କରି ଗୋଡ଼ ଭାଙ୍ଗି ପଡ଼ିଥିବା ଜଳରାକ୍ଷସ କଣ୍ଠରେ ତରବାରି ଛୁଆଇଁ ପାଟିକରି କହିଲା, "ଶୁଣ ଦୁଷ୍ଟ ! ମୁଁ ଏକରୁ ତିନିଯାଏ ଗଣିବା ଭିତରେ ଗଦା ଫୋପାଡ଼ିଦେଇ ଆଣ୍ଠେଇ ଆଣ୍ଠେଇ ଆସି ମୋ ପାଖରେ ଆତ୍ମସମର୍ପଣ କର । ନ ହେଲେ ତୋ ସାଥୀର ଛିନ୍ନମୁଣ୍ଡ ତଳେ ପଡ଼ିବ । ଏକ, ଦୁଇ..."

ମଙ୍ଗଳବର୍ମା 'ତିନି' ଉଚ୍ଚାରଣ କରିବା ପୂର୍ବରୁହିଁ ଜଳରାକ୍ଷସ ଗଦା ଫୋପାଡ଼ିଦେଇ ଆଣ୍ଠେଇପଡ଼ି ଥରି ଥରି କହିଲା, "ମୁଁ ତୁମ ଅଧୀନ ହେଲି । ମୋ ବନ୍ଧୁକୁ ମାର ନାହିଁ । ତାକୁ ବର୍ତ୍ତମାନ ଅନୁଗ୍ରହ କରି ଛାଡ଼ିଦିଅ ।"

"ତୁ ବୁଦ୍ଧୁ ହେଲେ ବି ତୋ ବନ୍ଧୁ-ପ୍ରୀତି ଦେଖି ଖୁସୀ ହେଲି । ଚାଲ୍, ତୋତେ ଔଷଧ ବତାଇଦେବି ।" ଏହା କହି ମଙ୍ଗଳବର୍ମା ନିକଟବର୍ତ୍ତୀ ବୁଦା ପାଖକୁ ଯାଇ ଖୋଜାଖୋଜି କରି ଗୋଟାଏ ଲତାରୁ ମୁଠାଏ ପତ୍ର ତୋଳିଲା । ସେତକ ଦଳି ଜଳରାକ୍ଷସ ହାତରେ ଦେଇ କହିଲା, "ଏହାକୁ ତୋ ବନ୍ଧୁ ଗୋଡ଼ରେ ଲଗାଇ ପଟି ବାନ୍ଧିଦେ । କିନ୍ତୁ ସାବଧାନ, ବାରଘଣ୍ଟା ଭିତରେ ସେ ଯେମିତି ମୋଟେ ହଲଚଲ ନ ହୁଏ । ଯଦି ହଲଚଲ ହେବ, ତେବେ ହୁଏତ ଆଣ୍ଠୁ ପାଖରୁ ପୂରା ଗୋଡ଼ କାଟି ଉଡ଼ାଇଦେବାକୁ ହେବ ।"

ଏହା ଶୁଣି ଜଳରାକ୍ଷସ ଯୋଡ଼ିକଙ୍କ ମୁହଁ ଶେତା ପଡ଼ିଗଲା । ମଙ୍ଗଳବର୍ମାର ଧାରଣା ହେଲା, ଏ ଦୁଇଟି ଜୀବଠାରୁ କୌଣସି ଖବର ପାଇବାର ଆଶା ନାହିଁ । ସେ ସେମାନଙ୍କୁ ସେହିଠାରେ ଛାଡ଼ି ଅଗ୍ରସର ହେଲା ।

ପୂର୍ବରୁ ସେ ଥରେ ମାୟା-ସରୋବରରେ କେତେଦିନ କଟାଇଥିଲା । ସେଠାକୁ ଯିବାର ସିଧା ବାଟ ସେ ଜାଣିଥିଲା । ତେବେ ଲଠି ସାହାଯ୍ୟରେ ସେ ଦୁର୍ଗମ ପଥରେ ଚାଲିବା ଥିଲା କଷ୍ଟସାଧ୍ୟ ।

ମଙ୍ଗଳବର୍ମା ଅଳ୍ପ ଦୂର ଯାଇଛି, ଗୋଟିଏ

ଉଚ୍ଚ ବୃକ୍ଷ ଉପରୁ କିଏ ଡାକ ଦେଲା, "ମଙ୍ଗଳ-ବର୍ମା !"

ମଙ୍ଗଳବର୍ମାର ମନେ ହେଲା କୌଣସି ବୃକ୍ଷ-ପିଶାଚ ତାଙ୍କୁ ଡାକୁଛି । ସେ ଉପରକୁ ଅନାଇଲା । କିନ୍ତୁ ଗଛର ଘନପତ୍ର ଭିତରେ କିଏ ରହିଛି, ତାହା ବୁଝିହେଲା ନାହିଁ । ତେବେ ଟିକିଏ ଲକ୍ଷ୍ୟ କରିବା ପରେ ସେ ଦେଖିଲା, ଗଛ ଉପରେ ମାଡ଼ିଥିବା ଗହଳ ଲତାବଣି ଭିତରେ ଛନ୍ଦିହୋଇ ରହିଛି ମାୟା-ସରୋବରେଶ୍ୱରର ହଂସରଥର ସାରଥି । ରଥ ଓଲଟିପଡ଼ିଲା ବେଳେ ଖସିପଡ଼ି ଲତାରେ ଅଟକି ସେ ବଞ୍ଚି-ଯାଇଥିଲା ।

"ଆରେ, ତୁମେ ତେବେ ବଞ୍ଚିଛ ! କିନ୍ତୁ ଏଯାଏ କ'ଣ ଗଛଡାଳ ଧରି ତଳକୁ ଆସିପାରୁ ନାହଁ ?" ମଙ୍ଗଳବର୍ମା ପଚାରିଲା ।

ସାରଥି କହିଲା, "ହଁ ସେଇଆ । କିନ୍ତୁ ତୁମେ ଆସ୍ତେ କଥା କୁହ । ଯମଦୂତ ପ୍ରାୟେ ମଣିଷଟାଏ ଗୋଟାଏ ନରବାନର ଆରୋହଣ କରି ଏଆଡ଼େ ଆସୁଛି । ତା' ସାଥିରେ କେତେଜଣ ସୈନ୍ୟ ଅଛନ୍ତି । ବୋଧହୁଏ, ଏ ଲୋକ ଆମର ଶତ୍ରୁ ଜୟଶୀଳର ବନ୍ଧୁ ତନ୍ତ୍ରସାଧକ ।"

ସେ କଥା ଶୁଣି ମଙ୍ଗଳବର୍ମା ଉତ୍ସାହ ଅନୁଭବ କଲା । ସେ ଭାବିଲା ସେ ଦଳରେ ବୈଦ୍ୟଦେବ ନାମରେ ପରିଚିତ ଦେବଶର୍ମା ଥିବେ । ତାଙ୍କ ସାଥିରେ ସେ ଶୀଘ୍ର ମାୟା-ସରୋବରରେ ପହଞ୍ଚି-ଯାଇପାରିବ ।

"ଶୁଣ ସାରଥି, ସେମାନେ ଆଉ ଆମର ଶତ୍ରୁ ହୋଇ ନାହାନ୍ତି । ତେବେ ସେମାନଙ୍କୁ ଆମର ମିତ୍ର ଭାବରେ ଗଣାଯିବ କି ନାହିଁ, ସେ କଥା ମୁଁ ଜାଣେନା । ମୁଁ ଜାଣିବାକୁ





ପାଇଲି, ମାୟା-ସର୍ବେଶ୍ୱରର ଜୟଶୀଳ ନାମକ ଯୁବକକୁ ଧରି ମାୟା-ସର୍ବେଶ୍ୱର ଅଭିମୁଖେ ଯାଇଛି । ଯେଉଁମାନେ ଆସୁଛନ୍ତି, ସେମାନେ ଜୟଶୀଳଙ୍କ ସନ୍ଧାନରେ ବାହାରିଛନ୍ତି । ମୁଁ ତ ଚ୍ଛେଠା । ଗଛ ଚଢ଼ି ତୁମକୁ ଓହ୍ଲାଇ ଆଣିପାରିବ ନାହିଁ । ତୁମେ ତେଣୁ ଡାଳ ବଜାଇ ଆଗନ୍ତୁକମାନଙ୍କ ଦୃଷ୍ଟି ଆକର୍ଷଣ କର ।"

ସାରଥି ଯେତେବେଳେ ଜାଣିଲା ଯେ ଆଗନ୍ତୁକମାନଙ୍କ ମଧ୍ୟରେ ଦେବଶର୍ମା ଅଛନ୍ତି, ସେତେବେଳେ ତା' ଭିତରେ ପ୍ରାଣ ପଶିଲା । ସେ ଥିଲା ରହି ରହି ଜୀବନର ଆଶା ଛାଡ଼ିଦେଇଥିଲା ।

ଅଳ୍ପଦୂରରେ ଯାଉଥିଲେ ତନ୍ତ୍ରସାଧକ, ରାଜା କନକାକ୍ଷ ତଥା ତାଙ୍କ ଅନୁଚରବର୍ଗ । ସାରଥି ସେମାନଙ୍କ ଉଦ୍ଦେଶ୍ୟରେ ଚିତ୍କାର କରି କହିଲା, "ଆଜ୍ଞା ! ମୋତେ ରକ୍ଷା କରନ୍ତୁ । ମୁଁ ଏଠାରେ ଗଛ ଡାଳରେ ଲତା ଫାନ୍ଦରେ ବନ୍ଦୀ ହୋଇ ପଡ଼ିଛି !".

ପ୍ରଥମେ ନରବାନର କାନରେ ସେ ଚିତ୍କାର ପଡ଼ିଲା । ସେ ରହିଯାଇ ଉପରକୁ ଅନାଇଲା ଓ ହାତ ଉଠାଇ ତନ୍ତ୍ରସାଧକଙ୍କୁ ଇସାରା କରି ସାରଥିର ଚିତ୍କାର ଯେଉଁ ଗଛରୁ ଶୁଭୁଥିଲା, ତାହା ଦେଖାଇଲା । ସେତିକବେଳେ ସାରଥି ଆଉ ଥରେ ଚିତ୍କାର କଲା ।

ଦ୍ୱିତୀୟ ଥର ତା' ଚିତ୍କାର ସମସ୍ତେ ଶୁଣିପାରିଲେ । ଦେବଶର୍ମା କେଇପାଦ ଆଗକୁ ଯାଇ କହିଲେ, "ମନେ ହୁଏ ହଂସରଥର ସାରଥି ଏ ଚିତ୍କାର କରୁଛି । ଏହି ଅଞ୍ଚଳରେ ସେ ଖସିପଡ଼ିଥିଲା ।"

ଅନ୍ୟମାନେ ଆଶ୍ଚର୍ଯ୍ୟ ହୋଇ ଇତସ୍ତତଃ ଅନାଉଥାନ୍ତି । ବଣ ଭିତରେ କୌଣସି ଅଶରୀରୀ ପ୍ରେତାତ୍ମା ସେଭଳି ଚିତ୍କାର କଲାଭଳି ମନେ ହେଉଥାଏ ।

"ବାଃ, ତାକୁ ବର୍ତ୍ତମାନ ଧରିଆଣିବ । ତା' ମାଲିକ ସର୍ବେଶ୍ୱରର ସବୁ ରହସ୍ୟ ତାହାଠାରୁ ଜଣା ପଡ଼ିବ । ଜୟଶୀଳ ମିଳିଯିବା

ପରେ ଏ ସମସ୍ତଙ୍କୁ ଗଛରେ ବାନ୍ଧି ମହାକାଳଙ୍କ ଉଦ୍ଦେଶ୍ୟରେ ବଳି ଦେବି ।" ଏହା କହି ତନ୍ତ୍ରସାଧକ ନରବାନରକୁ ସେ ଗଛ ଆଡ଼କୁ ନେଇଗଲେ ।

ନରବାନର ଯାଇ ସେ ଗଛ ତଳେ ପହଞ୍ଚିବା ପରେ ମଙ୍ଗଳବର୍ମା କହିଲା, "ତନ୍ତ୍ରସାଧକ ! ଗଛରେ ଝୁଲି ରହିଥିବା ଆମ ବନ୍ଧୁ ସାରଥିଙ୍କୁ ତଳକୁ ଆଣିବାକୁ ହେବ । କିପରି ତାହା କରିବା ?"

"ଜୟ ମହାକାଳଙ୍କର ଜୟ !" ବୋଲି ପାଟି କରି ତନ୍ତ୍ରସାଧକ କହିଲେ, "ମୋତେ ସବୁ କଥା ବେଶ୍ ମଜା ଲାଗୁଛି । ମାୟା-ସରୋବରେଶ୍ୱର ରାଜାଙ୍କ ପୁଅଝିଅଙ୍କୁ ଅପହରଣ କରି ନେଇ ଯାଇଥିଲି । ଏବେ ମୋ ମିତ୍ର ଜୟଶୀଳଙ୍କୁ ନେଇଗଲି । ଅଥଚ ସେ ଦୁଷ୍ଟ ପକ୍ଷର ଲୋକ ହୋଇ ମଧ୍ୟ ତୁମେମାନେ ଏମିତି ଢଙ୍ଗରେ କଥା କହୁଛ ଯେପରିକି ଆମେ ତୁମର ବନ୍ଧୁ !"

ଏହା ଶୁଣି ଦେବଶର୍ମା ତନ୍ତ୍ରସାଧକଙ୍କୁ ବୁଝାଇଲେ, "ଦେଖନ୍ତୁ, ଆମର ତଥା ମାୟା-ସରୋବରେଶ୍ୱରର ଶତ୍ରୁ ହେଲେ ଜଳରାକ୍ଷସଦଳ । ଆମେ ଏକ ହୋଇ ଯଦି ସେମାନଙ୍କୁ ଦମନ ନ କରିବା, ତେବେ ରାଜାଙ୍କ ପୁତ୍ରକନ୍ୟାଙ୍କୁ ବି ହୁଏତ ଉଦ୍ଧାର କରିପାରିବା ନାହିଁ ! ମୋର ମନେ ହୁଏ ସରୋବର ବର୍ତ୍ତମାନ ଜଳରାକ୍ଷସମାନଙ୍କ ଦଖଲରେ ।"

ସେତେବେଳେ ଗଛରେ ଝୁଲି ରହିଥିବା ସାରଥି କଥା ଅଳ୍ପସମୟ ସକାଶେ ସମସ୍ତେ ଭୁଲିଯାଇଥିଲେ । ହଠାତ୍ ସାରଥି ଦେଖିଲା, ଗଛର ଗୋଟିଏ ପ୍ରକାଣ୍ଡ ଡାଳ ଉପରୁ ଧୀରେ ଧୀରେ ତା' ଆଡ଼କୁ ଯେପରି ବିକଟ ମୃତ୍ୟୁ



ଅଗ୍ରସର ହୋଇଆସୁଛି ! ସେ ଜୀବର ଆଖି ଦୁଇଟି ତା'ଉପରେ ନିବଦ୍ଧ ହୋଇ ରହିଥାଏ । ସାରଥି ଆତଙ୍କରେ ଶିହରିଉଠିଲା।

ସେତିକବେଳେ ସସୈନ୍ୟେ ରାଜା କନକାକ୍ଷ ଆସି ସେଠାରେ ପହଞ୍ଚିଲେ ।

"ଆଜ୍ଞା ! ଏଥର ମୋତେ ଉଦ୍ଧାର କରନ୍ତୁ । ଗଛ ଉପରେ ଗୋଟାଏ ପ୍ରକାଣ୍ଡ ଅଜଗର ଅଛି । ମୋହରି ଆଡ଼କୁ ସେ ଧୀରେ ଧୀରେ ଅଗ୍ରସର ହେଉଛି ।" ସାରଥି ପୁଣି ଚିତ୍କାର କରି କହିଲା ।

ତନ୍ତ୍ରସାଧକ ନରବାନର କାନ୍ଧରେ ଗୋଟାଏ ଧକ୍କା ଦେଇ କହିଲେ, "କିରେ ! ଗଛ ଉପରେ କାବୁ ହୋଇ ରହିଥିବା ସାରଥିଟିକୁ ମୁକ୍ତ କରିପାରିବୁ ?"

ସଙ୍ଗେ ସଙ୍ଗେ ନରବାନର ଗଛ ଚଢ଼ିଯାଇ ଗୋଟାଏ ହାତରେ ଅଜଗରକୁ ଧରିପକାଇଲା ଓ ଅନ୍ୟ ହାତରେ ସାରଥିକୁ ଲତାଜାଲରୁ ଓଟାରି ଆଣିଲା । ନରବାନର ହାତରେ ପଡ଼ି ସାରଥି ଆପାଦମସ୍ତକ ଥରୁଥାଏ । ସେ ଗୋଟାଏ ଗଛଡାଳକୁ ଭିଡ଼ିଧରି କହିଲା, "ଏଥର ମୋତେ ଛାଡ଼ । ମୁଁ ଏକା ତଳକୁ ଯାଇପାରିବି ।"

ସେତିକବେଳେ ଦଳେ ଜଳରାକ୍ଷସ ପଥର ଗଦା ଧରି ସେଠାରେ ଆସି ପହଞ୍ଚିଲେ ଓ ସେମାନଙ୍କୁ ଆକ୍ରମଣ କଲେ ।

ଜଳରାକ୍ଷସମାନଙ୍କ ଭିତରୁ ଜଣେ ଗଣ୍ଡାର ଉପରେ ବସି ଅନ୍ୟମାନଙ୍କୁ କହୁଥାଏ, "ଭାଇମାନେ ! ଶତ୍ରୁପକ୍ଷର ଜଣେ ବି ଯେପରି ପଳାଇ ନ ପାରେ !"

ଗଛ ଉପରେ ଥାଇ ନରବାନର ସେ ଦୃଶ୍ୟ ଦେଖି ଏପରି ପ୍ରବଳ ଗର୍ଜନ ଛାଡ଼ିଲା ଯେପରିକି ଜଙ୍ଗଲ କମ୍ପିଯିବ ! ତା'ପରେ ଅଜଗରଟିକୁ ଛଡ଼ି ଭଳି ହଲାଇ ସେ ଗଣ୍ଡାର ଆରୋହଣ କରିଥିବା ଜଳରାକ୍ଷସ ଉପରକୁ ଡେଇଁପଡ଼ିଲା ।

(ଆଗାମୀ ସଂଖ୍ୟାରେ ସମାପ୍ୟ)





# ବର ପ୍ରାର୍ଥନା

ରାଜା ବିକ୍ରମାର୍କ ପୁନର୍ବାର ସେ ପ୍ରାଚୀନ ବୃକ୍ଷ ପାଖକୁ ଲେଉଟି ଆସିଲେ ଓ ବୃକ୍ଷ ଡାଳରୁ ଶବଟିକୁ ଉତାରି ଆଣି ଶୂନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଉଦ୍ୟତ ହେଲେ ।

ହଠାତ୍ ଶବସ୍ଥିତ ବେତାଳ କହିଲା, "ରାଜା ! ତୁମେ ଦାନୀ । କୁହାଯାଏ ଅପାତ୍ରରେ ଦାନ ଦେବା ଅନୁଚିତ । କିନ୍ତୁ ଥରେ ଥରେ ସୁପାତ୍ର ମଧ୍ୟ ଦାନ ଲାଭରୁ ବଞ୍ଚିତ ହୁଅନ୍ତି । ଦୃଷ୍ଟାନ୍ତ ରୂପେ କହୁଛି ମଣିଗୁପ୍ତର କାହାଣୀ । ଶୁଣ, ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।

ବେତାଳ ଗପିଚାଲିଲା : ପ୍ରାଚୀନ କାଳର କଥା । ଜଣେ ସିଦ୍ଧ ସନ୍ନ୍ୟାସୀ ଶିଷ୍ୟବର୍ଗ ସହ ଗୋଟିଏ ନଗରୀରେ ପହଞ୍ଚିଲେ । ସେ ନଗରୀରେ ଥିଲେ ମଣିଗୁପ୍ତ ନାମକ ଧନୀକ । ଦାତା କର୍ଣ୍ଣ ରୂପେ ସେ ଖ୍ୟାତି ଅର୍ଜିଥିଲେ । ସନ୍ନ୍ୟାସୀ ଦିନକ ପାଇଁ ମଣିଗୁପ୍ତଙ୍କ ଆତିଥ୍ୟ ସ୍ୱୀକାର କଲେ ।

ମଣିଗୁପ୍ତଙ୍କ ଘର ଆଗରେ ବହୁ ଆର୍ତ୍ତ

ବେତାଳ କଥା

ଲୋକେ ଠିଆ ହୋଇଥା'ନ୍ତି । ମଣିଗୁପ୍ତ ସମସ୍ତଙ୍କୁ ଦାନ ଦେଇ ବିଦାୟ କଲେ ।

ସନ୍ନ୍ୟାସୀ ସବୁ ଦେଖିଲେ । ବିଦାୟ ନେଲା ବେଳକୁ କହିଲେ, "ମଣିଗୁପ୍ତ ! ତୁମ ଆତିଥେୟତାରେ ମୁଁ ପ୍ରସନ୍ନ । ତୁମ ଦାନଶୀଳତା ବି ଦେଖିଲି । ମୋଠୁ କ'ଣ ବର ମାଗୁଛ ମାଗ । ଯଦି ନିର୍ମଳ ହୃଦୟରେ ମାଗିବ, ତେବେ ବର ଫଳିବ, ନ ହେଲେ ନୁହେଁ ।"

ମଣିଗୁପ୍ତ ସବିନୟେ କହିଲେ, "ମହାତ୍ମା ! ଏ ନଗରୀରେ ବହୁ ଗରିବ ଅଛନ୍ତି । ସେମାନଙ୍କୁ ସବୁଦିନେ ଦାନ ଦେଇପାରିଲା ଭଳି ସମ୍ପତ୍ତି ଯେପରି ମୋର ରହିଥାଉ ।"

ସନ୍ନ୍ୟାସୀ ହସିଲେ ଓ ମୁଣ୍ଡ ହଲାଇଲେ । ତା'ପରେ ସେ ଚାଲିଗଲେ ।

ବାଟରେ ଜଣେ ଶିଷ୍ୟ ତାଙ୍କୁ ପଚାରିଲା, "ଗୁରୁଦେବ ! ମଣିଗୁପ୍ତ କ୍ଷେତ୍ରରେ ବର ଫଳିବ ତ ?"

"ଅସମ୍ଭବ !" ସନ୍ନ୍ୟାସୀ କହିଲେ । କେଇଦିନ ପରେ ମଣିଗୁପ୍ତ ତା'ର ଐଶ୍ୱର୍ଯ୍ୟ ହରାଇ ଗରିବ ହୋଇଗଲା । ଦାନକର୍ମ ବନ୍ଦ ହେଲା ।

ବେତାଳ ଏତିକି ଗପିସାରି ଟିକିଏ ରହିଯାଇ ପଚାରିଲା, "କୁହ ରାଜା, ମଣିଗୁପ୍ତ ସୁପାତ୍ର । ତାକୁ ଯେଉଁ ବରଦାନ ଦିଆଗଲା, ତାହା କାହିଁକି ବ୍ୟର୍ଥ ହେଲା ? ଯଦି ପାରିବ, ଉତ୍ତର ଦିଅ । ଯଦି ଜାଣିକରି ମଧ୍ୟ ଚୁପ୍ ରହିବ, ତେବେ ତୁମ ଶିର ହେବ ସ୍କନ୍ଧଚ୍ୟୁତ !"

ବିକ୍ରମାର୍କ ତତ୍‌କ୍ଷଣାତ୍ ଉତ୍ତର ଦେଲେ : "ମଣିଗୁପ୍ତ ଯଦି ନିର୍ମଳ ହୃଦୟରେ ବର ମାଗିଥା'ନ୍ତେ ତେବେ ତାଙ୍କ ନଗରୀରେ ଯେପରି କେହି ଗରିବ ରହିବେ ନାହିଁ, ସେହି ବରହିଁ ମାଗିଥାନ୍ତେ । ସେ ନିଜେ ଚିରଦିନ ଦାତା ହୋଇ ରହିବାର ବର ମାଗିବା ଦାତାପଣିଆ ଦେଖାଇବାର ଗର୍ବ ଛଡ଼ା ଆଉ କ'ଣ ? ତାହା ଅହଂର ପ୍ରକାଶ । ଅହଂର ଖେଳ ବୁଝିବା ସହଜ ନୁହେଁ ।"

ରାଜାଙ୍କ ମୌନଭଙ୍ଗ ହେବା ମାତ୍ରେ ଶବ ସହିତ ବେତାଳ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲିପଡ଼ିଲା । (କଳ୍ପିତ)





# ନରବଳି

ଗୋବିନ୍ଦ ନିଜ କୁକୁରଟିକୁ ଧରି ଶ୍ରୀପୁର ଗାଁ ଛାଡ଼ି ଗୋଟିଏ ବଣୁଆ ମୁଲକରେ ପହଞ୍ଚିଲା । ସେଠାରେ ସେ ଦେଖିଲା ଗୋଟିଏ ବିଚିତ୍ର ଦୃଶ୍ୟ । ଦଳେ ଲୋକ ବାଜା ବଜାଇ ଗୋଟିଏ ମଇଁଷି ଟଣା ଗାଡ଼ି ଉପରେ ଜଣେ ଯୁବକକୁ ବାନ୍ଧି କୁଆଡ଼େ ନେଇ ଯାଉଛନ୍ତି । ଯୁବକଟିର କପାଳରେ ଥିଲା ବଡ଼ କୁଙ୍କୁମ ବିନ୍ଦୁ, ତା' ଗଳାରେ ଲମ୍ବିଥିଲା ଫୁଲହାର । କିନ୍ତୁ ତା' ମୁହଁ ଦିଶୁଥିଲା ଅତିଶୟ ବିଷାଦଗ୍ରସ୍ତ । ଗୋବିନ୍ଦର ସନ୍ଦେହ ହେଲା ଯୁବକଟିକୁ ହୁଏତ ବଳି ଦେବାକୁ ନେଇଯାଉଛନ୍ତି !

ଶୋଭାଯାତ୍ରା ପଛରେ ଚାଲିଥିଲା ଜଣେ ବୁଢ଼ୀ । ଗୋବିନ୍ଦ ଶୋଭାଯାତ୍ରାର ଉଦ୍ଦେଶ୍ୟ କ'ଣ ବୋଲି ତାକୁ ପଚାରିଲା । ବୁଢ଼ୀ ପାହାଡ଼ ତଳେ ଥିବା ଗୋଟିଏ ବସ୍ତି ଆଡ଼କୁ ଅଙ୍ଗୁଳି ଦେଖାଇ କହିଲା, "ଏଇ ହେଲା ଆମ ଗାଁ । ଏପଟେ ପାହାଡ଼ କଡ଼ରେ ଆମ ଠାକୁରାଣୀ ଶକୁନୀ ଦେବୀଙ୍କ ମନ୍ଦିର । ଦେବୀଙ୍କର ଆଦେଶ ଅଛି କି ପ୍ରତିବର୍ଷ ତାଙ୍କର ଗୋଟିଏ ନରବଳି ଲୋଡ଼ା । ଶକୁନୀ ଦେବୀଙ୍କ ମହିମା କମ୍ ନୁହେଁ । ସେ ରାଗିଗଲେ ସର୍ବନାଶ ହେବ । ଗତବର୍ଷ ନରବଳି ଦିଆଯାଇ ପାରିଲା ନାହିଁ ବୋଲି ବର୍ଷା ହେଲା ନାହିଁ; ଫସଲ ଉଧେଇଲା ନାହିଁ ॥ ଆମ ଗାଁର ଧନୁସିଂ ବୋଲି ଲୋକ କୌଣସି କାରଣରୁ ଛେଳିଟାଏ ବଳି ଦେବ ବୋଲି ମାନସିକ କରି ଦେଲା ନାହିଁ । ଫଳରେ ରକ୍ତ ବାନ୍ତି କରି ସେ କିଛିଦିନ ତଳେ ମରିଗଲା । ତେଣୁ ଗାଁ ଲୋକେ ପୁଣି ବଳି ଦେବାକୁ ଠିକ୍ କଲେ । ଏବର୍ଷ ଏହାର ପାଳି । ଖୋଦ୍ ଭୈରବ ବଳି ଦେବେ ।"

ଗୋବିନ୍ଦ ପଚାରିଲା, "ଆଚ୍ଛା ମାଉସୀ, ଏ

ଯୁବକର କ'ଣ ବାପାମା' ନାହାନ୍ତି ? ଏହାକୁ ବଳି ଦେଲେ କେହି କାନ୍ଦିବେ ନାହିଁ ?

"କହୁଛ କ'ଣରେ ? ସେ ପରା ମୋ ପୁଅ ! କିନ୍ତୁ ମୁଁ କାନ୍ଦିବି କାହିଁକି ? ଶକୁନୀ ଦେବୀ ଆଗରେ ବଳି ପଡ଼ିବା ଅର୍ଥ ସିଧା ସ୍ୱର୍ଗକୁ ଯିବା । ସେ ତ ସୌଭାଗ୍ୟର କଥା !" ବୁଢ଼ୀ ଜବାବ ଦେଇ ତରବରରେ ଶୋଭାଯାତ୍ରାରେ ଯୋଗ ଦେବା ପାଇଁ ଚାଲିଗଲା ।

ଗୋବିନ୍ଦ ଅବାକ୍ ହୋଇ ଚାହିଁରହିଲା । ଏତେ ଅନ୍ଧବିଶ୍ୱାସୀ ଲୋକଙ୍କ କବଳରୁ ଯୁବକକୁ ରକ୍ଷା କରାଯିବ କିପରି ? କିନ୍ତୁ ଆଖିଆଗରେ ସେ ବଳି ପଡ଼ିବ, ସେ କଥା ମଧ୍ୟ ସହିବା ଗୋବିନ୍ଦ ପକ୍ଷରେ ସମ୍ଭବପର ନ ଥିଲା । ଯେପରି ହେଲେ ବି ସେ ଯୁବକଟିକୁ ବଞ୍ଚାଇବାର ସିଦ୍ଧାନ୍ତ ନେଲା ।

ସେ ବସ୍ତି ଭିତରକୁ ଯାଇ ଦେଖିଲା ସମସ୍ତେ ଘରଦ୍ୱାର ଛାଡ଼ି ଶୋଭାଯାତ୍ରାରେ ଯାଇଛନ୍ତି । ସେ ଚଟାପଟ୍ ବସ୍ତିର ଗୋଟାଏ ଘରେ ନିଆଁ ଲଗାଇ ଦେଇ ଦୌଡ଼ି ଦୌଡ଼ି ଯାଇ ଶକୁନୀ ଦେବୀଙ୍କ ମନ୍ଦିର ପାଖରେ ପହଞ୍ଚିଲା ।

ଲୋକେ ତାଙ୍କ ଠାକୁରାଣୀଙ୍କୁ ପ୍ରଦକ୍ଷିଣ କରିସାରି ଯୁବକଟିକୁ ସେ ଭୟଙ୍କର ମୂର୍ତ୍ତି ଆଗରେ ଆଣି ଠିଆ କରାଇଥାନ୍ତି । ଜଣେ ଭୟଙ୍କର ଦିଶୁଥିବା ଲୋକ ଖଡ୍‌ଗ ଧରି ମନ୍ତ୍ରପାଠ କରୁଥାଏ । ତାକୁ ଭୈରବ ବୋଲି କୁହାଯାଉଥିଲା ।

ଗୋବିନ୍ଦ ତା' କୁକୁରକୁ ଇସାରା ଦେବା ମାତ୍ରେ ସେ ଭୈରବ ଉପରକୁ କୁଦିପଡ଼ି ତା'-ପରେ ତାକୁ ପଛକୁ ଭିଡ଼ିବାକୁ ଲାଗିଲା । ସେ ଗଡ଼ିଲା । ଲୋକେ ମଧ୍ୟ ତଟସ୍ଥ ହୋଇଗଲେ ।

"ଆମେ ନିଶ୍ଚେ କିଛି ଗୋଟାଏ ଭୁଲ କରିଛୁ !"



ଭୈରବ ରଡ଼ି କରି କହିଲା ।

ଗୋବିନ୍ଦ ଆଗକୁ ଆସି କହିଲା, "ଠିକ୍ ଧରିଛ । ବର୍ତ୍ତମାନ ଶୁଣ ଭୁଲଟି କ'ଣ ।"

ସମସ୍ତେ ଆହୁରି ଅବାକ୍ ହୋଇ ତା' ଆଡ଼କୁ ଅନାଇଲେ । ସେ କହିଲା : ମୁଁ କାଉଁରି-କାମାକ୍ଷୀଙ୍କ ଗାଁର ଲୋକ । ସବୁ ଡାକିଣୀ ଯକ୍ଷିଣୀ ଧରଣର ଦେବୀମାନଙ୍କର ଜନ୍ମ ସେଇ ଗାଁରେ । ଶକୁନୀ ଦେବୀଙ୍କ କରାମତି ବହୁତ । ଆମ ଗାଁରେ ବି ତାଙ୍କର ପୂଜା ହୁଏ । ପ୍ରତିବର୍ଷ ଗୋଟିଏ ନୁହେଁ, ଏଗାରଟି ନରବଳି ଦିଆହୁଏ । ଏବର୍ଷ ଯେଉଁମାନଙ୍କୁ ବଳି ଦେବାକୁ ବଛା ହେଲା, ତହିଁ ଭିତରେ ଥିଲେ ଜଣେ ବ୍ରାହ୍ମଣ । ଆମ ଗାଁରେ ଯେ ବଳି ଦିଅନ୍ତି ସେ ସାଧାରଣ ଭୈରବ ନୁହନ୍ତି, ସ୍ୱୟଂ କାଳଭୈରବ । ବ୍ରାହ୍ମଣ କାଳ-ଭୈରବକୁ କହିଲା, "ଗତ ରାତିରେ ଶକୁନୀ ଦେବୀ ବିଘ୍ନ ହୋଇଯାଇଛନ୍ତି । ଏଣିକି ସେ ଆଉ ନରମାଂସ ଖାଇବେ ନାହିଁ; ପଶୁମାଂସ ବି ନୁହେଁ । ଏଣିକି ବଳିଦାନ ବନ୍ଦ କର, ନ ହେଲେ ଫଳ ଭୋଗିବ ।"

କିନ୍ତୁ କାଳଭୈରବ ଅଟ୍ଟହାସ୍ୟ କରି ବ୍ରାହ୍ମଣ କଥାକୁ ଉଡ଼ାଇଦେଲା । ଶକୁନୀ ଦେବୀ କୁଆଡ଼େ ନରବଳି ଗୃହାନ୍ତି ନାହିଁ ! ବାରଂବାର ଏହି କଥା ତାଚ୍ଛଲ୍ୟସୂଚକ କଣ୍ଠରେ କହି କାଳଭୈରବ ବ୍ରାହ୍ମଣକୁ ବଧ କରିବାକୁ ଉଦ୍ୟତ ହେବା ମାତ୍ରେ ଆକାଶରେ ଭୀଷଣ କଳା ମେଘ ଘୋଟିଆସିଲା, ମେଦିନୀ କମ୍ପିଲା । ସମସ୍ତଙ୍କ ଆଗରେ କାଳ-ଭୈରବ କୁକୁର ପାଲଟିଗଲା । ଏହି ହେଲା ସେ କୁକୁର । ଏହାକୁ ଶାପମୁକ୍ତ କରିବା ନିମନ୍ତେ ମୁଁ ତୀର୍ଥସ୍ଥାନମାନଙ୍କୁ ନେଇ ଯାଉଛି ।

ଗୋବିନ୍ଦର କଥା ଶୁଣି ସମସ୍ତେ ହତବମ୍ବ



ହୋଇ ରହିଲେ । ସେ ପୁଣି କହିଲା, "କାଳ-ଭୈରବ କୁକୁର ରୂପରେ ତା' ଜାତିଭାଇ ଏଠା-କାର ଭୈରବଟିକୁ ରକ୍ଷା କଲା । ନ ହେଲେ ଇଏ ବି କୁକୁର ପାଲଟିଥାନ୍ତେ । ସବୁ ରହସ୍ୟ କହିଦେଲି । ଏଣିକି ତୁମ ଇଚ୍ଛା ହେଲେ ବଳି ଦିଅ ଓ ଫଳ ଭୋଗ କର । ସାବଧାନ !"

ସେତିକିବେଳେ ବସ୍ତିଆଡ଼ୁ ଧୂଆଁ ଉଠୁଥିବାର ଲକ୍ଷ୍ୟ କରି ସମସ୍ତେ ଦୌଡ଼ିଲେ । ସେତେ-ବେଳକୁ ଯୋଡ଼ିଏ ମାତ୍ର କୁଡ଼ିଆ ଜଳିଯାଇଥାଏ । ଦୈବକୁ ସେଥିରୁ ଗୋଟିଏ ଭୈରବର କୁଡ଼ିଆ । ଦେବୀଙ୍କ ଅନିଚ୍ଛା ସତ୍ତ୍ୱେ ତାଙ୍କୁ ନରବଳି ଚଖା-ଇବାର ଉଦ୍ୟମ ହେବାରୁ ଯେ ବସ୍ତିରେ ନିଆଁ ଲାଗିଲା, ଏଥିରେ କାହାର ସନ୍ଦେହ ରହିଲା ନାହିଁ ।

ସମସ୍ତେ ନିଆଁ ଲିଭାଇବେ କ'ଣ, ଗୋବିନ୍ଦ ଏବଂ ତା' କୁକୁର ଆଡ଼କୁ ବଲବଲ କରି ଅନାଇ ଠିଆ ହୋଇଥାନ୍ତି । ଗୋବିନ୍ଦହିଁ ସେମାନଙ୍କୁ ତାଗିଦା ଦେଇ ନିଆଁ ଯେପରି ଅଧିକ ବ୍ୟାପି ନ ଯିବ, ସେଥିପାଇଁ ପାଣି ଢଳା-ଢଳି କରାଇଲା । ନିଆଁ ପ୍ରଶମିତ ହେଲା ।

ଭୈରବ ଗୋବିନ୍ଦର କୁକୁର ଗୋଡ଼ତଳେ ପଡ଼ି କହିଲା, "ହେ କାଳଭୈରବ ! ମୋ କୁଡ଼ିଆ ଗଲେ ଯାଉ, ମୋତେ ଯେ କୁକୁର ବନିଯିବାରୁ ରକ୍ଷା କଲ, ସେଥିପାଇଁ ତୁମକୁ ଅଶେଷ ଧନ୍ୟବାଦ । ଏଣିକି ଆମେ ଠାକୁରାଣୀ ପାଖରେ ଲାଉବଳି ଦେବୁଁ । ମୁଁ ନିଜେ ବି ଆଉ ମାଂସ ଖାଇବି ନାହିଁ ।"

ଗୋବିନ୍ଦ କୁକୁରକୁ ଧରି ସେ ଗାଁ ଛାଡ଼ି ଚାଲି-ଗଲା । ଯୋଡ଼ିଏ କୁଡ଼ିଆ ପୋଡ଼ିଥିବାରୁ ତା' ମନରେ ଯେଉଁ ଅନୁଶୋଚନା ହେଲା, ନରବଳି ବନ୍ଦ କରି ପାରିଥିବାର ଆନନ୍ଦ ସେ ଶୋଚନାକୁ ଧୋଇଦେଲା ।

ସେ ଚାଲିଯାଉଥିବାବେଳେ ପଲ୍ଲୀର ଲୋକେ ପଛରୁ ବାରମ୍ବାର ତାକୁ ଅଭିବାଦନ କରୁଥାନ୍ତି ।





# ଭାଗ୍ୟ !

ମାଧବ ନାମରେ ଚାଷୀଟିଏ ଥାଏ । ସେ ବୁଢ଼ା ହୋଇ ମରିବା ସମୟ ପାଖେଇ ଆସିବାରୁ ଦୁଇ ପୁଅଙ୍କୁ ଡାକି ଜମି, ଘର ଠିକ୍ ଭାବରେ ଦୁଇଭାଗ କରି ବାଣ୍ଟିଦେଲା । ମରିବା ପୂର୍ବରୁ ମାଧବ ସାନ ପୁଅକୁ ବୁଝାଇଲା, "ଦେଖ୍ ପୁଅ, ତୋର କୌଣସି କିଛି ଦରକାର ହେଲେ ବଡ଼ ଭାଇକୁ ମାଗିବୁ । ବିପଦ ପଡ଼ିଲେ ତୋ ଜମିର ଈଶାନ କୋଣକୁ ଗୋଟିଏ କୂଅ ଖୋଳାଇବୁ ।"

ମାଧବର ବଡ଼ ପୁଅ ରଙ୍ଗନାଥର ସ୍ୱଭାବ ଖୁବ୍ ଭଲ ଥିଲା । କାମଦାମରେ ବି ସେ ଖୁବ୍ ପାରଙ୍ଗମ ଥିଲା । କିନ୍ତୁ ସାନ ପୁଅ ସୋମନାଥ ଥିଲା ମହା ଅଳସୁଆ ଓ ନିହାତି ଅଯୋଗ୍ୟ ।

ବର୍ଷାକାଳ ଆସିବାରୁ ରଙ୍ଗନାଥ ତା' ନିଜ ଜମିରେ ଚାଷ ଆରମ୍ଭ କଲା । କିନ୍ତୁ ସୋମନାଥର ଜମି ପଡ଼ିଆ ପଡ଼ିଲା । କାରଣ ସେ ଚାଷରେ ଆଦୌ ମନ ଦେଲା ନାହିଁ । ବଡ଼ ଭାଇ କଥା ମଧ୍ୟ ଶୁଣିଲା ନାହିଁ । ଖାଲି ଏଆଡ଼େ ସେଆଡ଼େ ଫୁଙ୍ଗି ମାରି ବୁଲୁଥାଏ । ରଙ୍ଗନାଥ ବହୁଥର କହି କହି ଶେଷରେ ଚୁପ୍ ହୋଇ ରହିଲା ।

କିଛିଦିନ ପରେ ରଙ୍ଗନାଥର ଜମି ଫସଲରେ ପୂର୍ଣ୍ଣ ହୋଇ ହସିଉଠିଲା । ଦେଖିଲେ ମନ ଆନନ୍ଦ ହେବ । କିନ୍ତୁ ସୋମନାଥର ଜମି ପଡ଼ିଆ ପଡ଼ିଥାଏ । ଭାଇର ସୁନ୍ଦର ଫସଲ ଦେଖି ତା' ମନରେ ଈର୍ଷା ହେଲା ।

ଦିନେ ସୋମନାଥ ରଙ୍ଗନାଥକୁ କହିଲା, "ଭାଇ, ମୁଁ ତୁମ କଥା ନ ମାନି, ଫସଲ କଲି ନାହିଁ ତେଣୁ ମୋ ଜମି ପଡ଼ିଆ ପଡ଼ିଛି । ତୁମେ ଜାଣ ମୋତେ ସେସବୁ କାମ ଆସେ ନାହିଁ । ତୁମେ ଟିକେ ମୋ ଜମିରେ ଫସଲ କରି ଦିଅନ୍ତ ନାହିଁ ?"

ରଙ୍ଗନାଥ ଛୋଟ ଭାଇକୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ତା' ଜମିରେ ଫସଲ କଲା । ଦୁଇଦିନ ପରେ ସୋମନାଥ କହିଲା, "ଭାଇ, ତୁମେ ମୋ ଜମି ନେଇଯାଅ ଓ ମୋତେ ତୁମ

ଜମି ଦେଇଦିଅ । ତେବେ ଏଣିକି ସବୁ କାମ ମୁଁ କରିନେବି ।"

ଏଥର ମଧ୍ୟ ସୋମନାଥର କଥା ରଙ୍ଗନାଥ ମାନିନେଲା ଓ ଜମି ବଦଳ କରାଗଲା । ରଙ୍ଗନାଥ ସୋମନାଥର ଯେଉଁ ଜମି ନେଲା ସେଥିରେ ଜଳସେଚନର ସୁବିଧା ନ ଥାଏ । ରଙ୍ଗନାଥ ଜମିରେ କୂଅ ଥିଲା । କିନ୍ତୁ ସେଠାରୁ ପାଣି ଆଣି ଜମିରେ ମଡ଼ାଇବା ଥିଲା ଦୁରୂହ ବ୍ୟାପାର । ସେଥିପାଇଁ ସୋମନାଥକୁ ତା' ବାପା କୂଅ ଖୋଳାଇବାର ପ୍ରସ୍ତାବ ଦେଇଥିଲା । ବୁଢ଼ା ହୁଏତ ଜାଣିଥିଲା ସାନପୁଅର ଜମିଜମା କାମ କରିବାରେ ଆଦୌ ରୁଚି ନାହିଁ । ତେଣୁ ତାକୁ ସାଧାରଣ ଜମି ଦେଇଥିଲା ।

କୂଅ ଖୋଳିବା ପାଇଁ ବାପା ସୋମନାଥକୁ ଉପଦେଶ ଦେବା କଥା ରଙ୍ଗନାଥର ମନେ ପଡ଼ିଲା । ତେଣୁ ସେ ଈଶାନ କୋଣରେହିଁ କୂଅ ଖୋଳିଲା । ପ୍ରାୟ ଦୁଇହାତ ଖୋଳିଛି ନା ନାହିଁ ତାକୁ ଗୋଟିଏ ଗରା ମିଳିଲା । ତା'ର ମୁହଁ ବନ୍ଦ ଥିଲା । ସେ ଆଶ୍ଚର୍ଯ୍ୟ ହୋଇ ତାକୁ ଖୋଲି ଦେଖିଲା ସେଥିରେ ଅନେକ ଟଙ୍କାପଇସା ଓ ଅନ୍ୟାନ୍ୟ ଜିନିଷ ଭରା ହୋଇଛି । ରଙ୍ଗନାଥ ବୁଝିପାରିଲା ଯେ ସେସବୁ ଧନ ତା' ବାପାର ସାରା ଜୀବନର ଅର୍ଜନ । ସୋମନାଥକୁ ଅଯୋଗ୍ୟ ଦେଖି ତାକୁ ସାଧାରଣ ଜମି ଦେଇ ସେଥିରେ ଈଶାନ କୋଣରେ କୂଅ ଖୋଳିବାର ପ୍ରସ୍ତାବ ଦେଇଥିଲେ । କିନ୍ତୁ ରଙ୍ଗନାଥ ଥିଲା ଯୋଗ୍ୟ ପୁତ୍ର; ତେଣୁ ତାକୁ ଭଲ ଜମି ଦେଇଥିଲେ ।

ନିଜ ପିତାଙ୍କ ଇଚ୍ଛା ପୂରଣ ହେବା ଉଚିତ ଭାବି ରଙ୍ଗନାଥ ସେହି ଧନକୁ ସୋମନାଥକୁ ଦେଇଦେବାକୁ ଠିକ୍ କଲା । କିନ୍ତୁ ରାତିରେ ଯାଇ ତା' ଘରେ ଦେଖିଲା ସେ ନାହିଁ ।

କଥା କ'ଣ କି ରଙ୍ଗନାଥ ଯେତେବେଳେ କୂଅ ଖୋଳୁଥିଲା, ସେତେବେଳେ ଗୋପନରେ ସୋମନାଥ ତା' ଘରବାଡ଼ି ଓ ଫସଲପୂର୍ଣ୍ଣ ଜମିସବୁ ଜଣକୁ ବିକିଦେଇ ଟଙ୍କାନେଇ କୁଆଡ଼େ ପଳାଇଛି । ଜମିର ସବୁ କାମ ରଙ୍ଗନାଥ କରିଥିଲା । ତଥାପି କେବଳ ଫସଲ କାଟିବା କାମଟି ମଧ୍ୟ ସୋମନାଥ ଦ୍ୱାରା ହୋଇ ପାରିଲା ନାହିଁ ।

ସୋମନାଥର ଦୁର୍ଭାଗ୍ୟ କଥା ଚିନ୍ତା କରି ରଙ୍ଗନାଥ ମନେ ମନେ ତା' ପ୍ରତି ଦୟା କଲା ।





# ସୀତା ସାଗର

ମୋତିପୁରର ଜମିଦାର ହରିହରଙ୍କ ସ୍ତ୍ରୀ ଜଣେ ଅତ୍ୟନ୍ତ ସତ୍‌ସ୍ୱଭାବର ମହିଳା ଥିଲେ । ଲୋକେ ତାଙ୍କୁ ମା’ ଭଳି ଜ୍ଞାନ କରୁଥିଲେ ।

କିନ୍ତୁ ଦୁଃଖର ବିଷୟ, ଗୋଟିଏ ପୁଅ ଜନ୍ମ କରି ସେ ମରିଗଲେ । ପୂର୍ବରୁ ତାଙ୍କ ନାମରେ ହରିହର ଗୋଟିଏ ସୁନ୍ଦର ପୁଷ୍କରିଣୀ ଖୋଳାଇ ତା’ର ନାମ ଲକ୍ଷ୍ମୀସାଗର ରଖିଥିଲେ । ତାଙ୍କ ମୃତ୍ୟୁ ହେବାରୁ ସେହି ପୁଷ୍କରିଣୀ ତଟରେ ତାଙ୍କ ସତ୍କାର କରାଗଲା ।

ଏକ ପବିତ୍ର ପର୍ବ ଦିନରେ ତାଙ୍କ ମୃତ୍ୟୁ ହୋଇଥିଲା । ତେଣୁ ପ୍ରତିବର୍ଷ ଲୋକେ ସେହି ଦିନ ଆସି ଲକ୍ଷ୍ମୀସାଗରରେ ବୁଡ଼ ପକାଇବାକୁ ଲାଗିଲେ ।

ତିନି ବର୍ଷ ଅନ୍ତେ ଜମିଦାର ହରିହର ଦିନେ ଆଉ ଜଣେ ଜମିଦାରଙ୍କ ନିମନ୍ତ୍ରଣରେ ତାଙ୍କ ଘରକୁ ଗଲେ । ସେ ଜମିଦାରଙ୍କର ସୀତା ବୋଲି ସୁନ୍ଦରୀ କନ୍ୟାଟିଏ ଥିଲା । ହରିହର ସେ କନ୍ୟାକୁ ବିବାହ କରନ୍ତୁ ବୋଲି ପ୍ରସ୍ତାବ ଦିଆଗଲା । ହରିହର ରାଜି ହେଲେ । ବିବାହ ସମ୍ପନ୍ନ ହେଲା ।

ସୀତା ବୋହୂ ହୋଇ ଆସି ସମସ୍ତଙ୍କ ମନ କିଣିନେଲେ । ଲକ୍ଷ୍ମୀଙ୍କ ପୁଅକୁ ସେ ନିଜ ପୁଅ ଭଳି ଆଦର କଲେ । ହରିହର ଖୁସି ହୋଇ ଲକ୍ଷ୍ମୀସାଗର ପାଖରେ ଆଉ ଗୋଟିଏ ପୁଷ୍କରିଣୀ ଖୋଳାଇଲେ । ତା’ର ନାମ ରଖିଲେ ସୀତାସାଗର ।

କିନ୍ତୁ ଲକ୍ଷ୍ମୀସାଗରକୁ ଲୋକେ ଯେପରି ପବିତ୍ର ମଣୁଥିଲେ, ସୀତାସାଗରକୁ ସେପରି ମଣୁ ନ ଥିଲେ । ନିଜ ବାତାୟନ ଦେଇ ସୀତା ଦେଖୁ-

ପି. ସି. ସରକାର, ଯାଦୁକର



ଥିଲେ, ତାଙ୍କ ନାମରେ ନାମିତ ପୁଷ୍କରିଣୀ ପ୍ରତି କେହି ଆଦର ଦେଖାଉ ନାହାନ୍ତି । ସେ ଯେତେ ଉଦାର ହୃଦୟ ହେଲେ ବି ମନେ ମନେ ବେଦନା ଅନୁଭବ କରୁଥିଲେ ।

ଦିନେ ହରିହର କହିଲେ, "ଲୋକେ କହୁ-ଛନ୍ତି, ସୀତା ଲକ୍ଷ୍ମୀଙ୍କ ଜାଆଁଲା ଭଉଣୀ !"

"ମୋର ସେ ଯୋଗ୍ୟତା କାହିଁ ? ଲକ୍ଷ୍ମୀଙ୍କ ଭଳି ହୋଇଥିଲେ ମୁଁ ମଧ୍ୟ ଗୋଟିଏ ପବିତ୍ର ଦିନରେ ମରିବି । ଲୋକେ ସେତେବେଳେ ସୀତାସାଗରକୁ ମଧ୍ୟ ଲକ୍ଷ୍ମୀସାଗରର ଜାଆଁଲା ଭଉଣୀ ବୋଲି କହିବେ ।" ସୀତା କହିଲେ ।

ହରିହର ବୁଝିଲେ, ସୀତାସାଗର ଲକ୍ଷ୍ମୀ-ସାଗର ଭଳି ଲୋକଙ୍କୁ ଆକୃଷ୍ଟ କରେ ନାହିଁ ବୋଲି ସୀତାଙ୍କ ମନରେ କ୍ଷୋଭ ଦେଖା ଦେଇଛି ।

ସୀତାଙ୍କ ମନର କ୍ଷୋଭ କିପରି ଦୂର କରିବେ, ସେଥିପାଇଁ ହରିହର ବହୁତ ଚିନ୍ତା କଲେ । ସୀତା ସାଧାରଣ ସ୍ତରର ମଣିଷ ହୋଇଥିଲେ ହୁଏତ ଅଳଙ୍କାର, ନୂଆ ଶାଢ଼ି ବା ସେମିତି କିଛି ଉପହାର ଦ୍ୱାରା ଭୁଲାଇ ଦିଆଯାଇ ପାରନ୍ତା । କିନ୍ତୁ ସେସବୁ ପ୍ରତି ତାଙ୍କର ଲୋଭ ନ ଥିଲା । ସେ ଯେ ଲକ୍ଷ୍ମୀଙ୍କ ଭଳି ମହତ୍ ନୁହନ୍ତି, ଲୋକେ ତାଙ୍କୁ ସେଭଳି ଶ୍ରଦ୍ଧାପୂର୍ଣ୍ଣ ଆଖିରେ ଦେଖନ୍ତି ନାହିଁ, ଏହାହିଁ ଥିଲା ତାଙ୍କ ଶୋଚନାର ହେତୁ ।

ଶେଷକୁ ହରିହର ଦେଖିଲେ, ତାଙ୍କ ମୁଣ୍ଡକୁ କୌଣସି ବୁଦ୍ଧି ଆସୁ ନାହିଁ ।

ଯାଦୁକର ସୋମନାଥ ଥିଲେ ହରିହରଙ୍କ ସଖା । ହରିହର ନିଜର ସବୁ ସମସ୍ୟା ସଖାଙ୍କୁ ଜଣାଉଥିଲେ । ସୀତାଙ୍କ କ୍ଷୋଭ କଥା ମଧ୍ୟ ସେ ସୋମନାଥଙ୍କୁ କହିଲେ । ସୋମନାଥ ତାଙ୍କୁ ଉପଯୁକ୍ତ ପରାମର୍ଶ ଦେଲେ ।

ହରିହର ଦିନେ ସୀତାଙ୍କୁ କହିଲେ, "ମୁଁ ସୀତାସାଗର ତଟରେ ଗୋଟିଏ ମନ୍ଦିର ନିର୍ମାଣ କରାଇବି । ଫଳରେ ଜନତା ଆଖିରେ ଲକ୍ଷ୍ମୀ-ସାଗର ଭଳି ସୀତାସାଗର ମଧ୍ୟ ପବିତ୍ର ହେବ ।"

ସୀତା କହିଲେ, "ତା' କାହିଁକି ହେବ ? ମନ୍ଦିର ତିଆରି ହେଲେ ମନ୍ଦିରହିଁ ପବିତ୍ର ହେବ । ପୁଷ୍କରିଣୀ ପବିତ୍ର ବୋଲି ଲୋକଙ୍କର ଧାରଣା ହେବାର କାରଣ କ'ଣ ?"

"ଆରେ ତୁମ ହୃଦୟ ପବିତ୍ର । ଦିନେ ନା ଦିନେ ତୁମ ନାମରେ ନାମିତ ପୁଷ୍କରିଣୀ ମଧ୍ୟ ପବିତ୍ର ବୋଲି ଗଣା ହେବ, ସନ୍ଦେହ ନାହିଁ ।" ହରିହର କହିଲେ ।

ସୀତାସାଗର କୂଳରେ ଯଥାଶୀଘ୍ର ଶଙ୍ଖମଲମଲ ପଥରରେ ଶିବମନ୍ଦିରଟିଏ ତିଆରି ହେଲା । ଖାଲି ଦିଅଁ ସ୍ଥାପିତ ହେବା ବାକି ରହିଲା ।

ହରିହର ସଖା ସୋମନାଥକୁ କହିଲେ, "ତୁମ ପରାମର୍ଶ ଅନୁସାରେ ମନ୍ଦିର ପ୍ରସ୍ତୁତ ହେଲା । ଏଥର କ'ଣ କରିବାକୁ ହେବ କୁହ । ମନ୍ଦିର ନିର୍ମାଣ ହେବାରୁ ସୀତା ଖୁବ୍ ଖୁସୀ । କିନ୍ତୁ ଲୋକେ ଯେଯାଏ ସୀତାସାଗରକୁ ପବିତ୍ର ନ ମଣିଛନ୍ତି, ସେଯାଏ ସେ ପୂରା ସନ୍ତୋଷ ପାଇବେ ନାହିଁ ।"

"ଦେଖ, ଏକ ପବିତ୍ର ଦିନରେ ତୁମ ପ୍ରଥମ ସ୍ତ୍ରୀଙ୍କର ଦେହାନ୍ତ ହୋଇଥିଲା ଏବଂ ଲକ୍ଷ୍ମୀସାଗର ସହ ତାଙ୍କ ସ୍ମୃତି ଜଡ଼ିତ ବୋଲି ଲକ୍ଷ୍ମୀସାଗରର ପାଣିକୁ ଲୋକେ ପବିତ୍ର ମଣନ୍ତି । ବର୍ତ୍ତମାନ ଆମକୁ ଏପରି କୌଣସି କାମ କରିବାକୁ ପଡ଼ିବ, ଯାହା ଫଳରେ ଲୋକମାନେ ସୀତାସାଗରର ପାଣିରେ କୌଣସି ବିଶେଷତ୍ୱ ରହିଛି ବୋଲି ବିଚାରିବେ ।" ସୋମନାଥ ଏହି ଭୂମିକା କରି



ତା'ପରେ ହରିହରଙ୍କୁ ଗୋପନରେ ଯାହା କହି-ବାର କହିଲେ ।

ପରଦିନ ଗାଁରେ ପ୍ରଚ୍ଚାର ହୋଇଗଲା ଯେ ମନ୍ଦିରରେ ଯେଉଁ ଶିଳା ଦେଔରୂପେ ପୂଜା ପାଇବେ, ସେ ଶିଳା ଗ୍ରାମର କୌଣସି ପୋଖ-ରୀରେ ରହିଛି ବୋଲି ଜମିଦାର ସ୍ୱପ୍ନ ଦେଖିଛନ୍ତି । କିନ୍ତୁ କେଉଁ ପୋଖରୀରୁ ସେ ଶିଳା ବାହାରିବ, ତାହା ଜଣାପଡ଼ ନାହିଁ । ସବୁ ଜଳାଶୟରୁ ପାଣି ଆଣିଲେ ଯାଇ ଜଣା ପଡ଼ିବ । ହରିହରଙ୍କ ଅନୁରୋଧ, ସମସ୍ତେ ନିଜ ନିଜ ପୋଖରୀମାନଙ୍କରୁ ମାଟି ପାତ୍ରରେ କିଛି କିଛି ପାଣି ଆଣି ଗୋଟିଏ ନିର୍ଦ୍ଦିଷ୍ଟ ଦିନ ମନ୍ଦିର ପାଖରେ ଆସି ଠୁଳ ହୁଅନ୍ତୁ ।

ନିର୍ଦ୍ଦିଷ୍ଟ ଦିନ ମନ୍ଦିର ପ୍ରାଙ୍ଗଣରେ ଲୋକେ ପାଣିପାତ୍ରମାନ ଧରି ଆସି ପହଞ୍ଚିଗଲେ । ଜମି-ଦାର ହରିହର ଗୋଟିଏ କାଚ ଗିଲାସକୁ ଗୋଟିଏ ଗୋଟିଏ ପାତ୍ରରୁ ପାଣି ଢାଳୁଥାନ୍ତି ଓ ଗିଲାସ ଉପରକୁ ଟେକି ଦେଖୁଥାନ୍ତି । ପାଣିରେ କିଛି ବିଶେଷତ୍ୱ ପରିଲକ୍ଷିତ ହେଉ ନ ଥାଏ । କିନ୍ତୁ ଯେତେବେଳେ ସୀତାସାଗରର ପାଣି ସେ ଗିଲାସରେ ଢାଳି ଉପରକୁ ଟେକିଲେ, ସେତେ-ବେଳେ ସମସ୍ତଙ୍କ ଆଖି ଆଗରେ ସାଧାରଣ ପାଣି ବାଇଗଣିଆ ରଙ୍ଗରେ ପରିଣତ ହେଲା ।

ଅତଏବ ଜଣାପଡ଼ିଲା ଯେ ସୀତାସାଗର ଭିତରେହିଁ ଶିଳା ରହିଛି । ଖୋଳିବା ବେଳକୁ ଶିଳା ମିଳିଗଲା । ଲୋକେ ଜୟଧ୍ୱନି କଲେ । ତେଣିକି ସୀତାସାଗରର ପାଣି ଅତି ମହତ୍ତ୍ୱପୂର୍ଣ୍ଣ ବୋଲି ଲୋକଙ୍କ ଧାରଣା ହେଲା ଓ ଯେଉଁଦିନ ଶିଳା ମିଳିଲା, ପ୍ରତିବର୍ଷ ସେହିଦିନ ଲୋକେ ସେଥିରେ ସ୍ନାନ କରିବାକୁ ଆଗ୍ରହ ଦେଖାଇଲେ ।

କୌଶଳଟି ଶିଖାଇଲେ ସୋମନାଥ । ସେ ଖଣ୍ଡିଏ କଳା ସରୁ ସୂତାକୁ ପୋଟାସିଅମ୍ ପର-ମାଙ୍ଗାନେଟ୍‌ରେ ସିକ୍ତ କରି ହରିହରଙ୍କୁ ଦେଇ-ଥିଲେ । ହରିହର ସୀତାସାଗରର ପାଣି ଗିଲାସକୁ ଢାଳି ଗିଲାସ ଶୂନ୍ୟକୁ ଟେକିବା ବେଳେ ଅଙ୍ଗୁଳିରେ ରହିଥିବା ସେ ସୂତାର ଅଗ ପାଣିରେ ବୁଡ଼ାଇ ଦେଇଥିଲେ । ଫଳରେ ପାଣିର ରଙ୍ଗ ବଦଳିଗଲା ।





# ସାରଙ୍ଗର ବୈରାଗ୍ୟ

Sudam Charana Patra

ସୁଦର୍ଭ ନାମକ ଏକ ଦେଶରେ ନାନା ପ୍ରକାର କୁପ୍ରଥା ପ୍ରଚଳିତ ଥିଲା । ଅଛୁଆଁ ବାରଣ ଖୁବ୍ ଥିବାରୁ ହରିଜନମାନେ ଗ୍ରାମର ଶେଷ-ସୀମାରେ ରହୁଥିଲେ । ଯୌତୁକ ପ୍ରଥା ମଧ୍ୟ ଥାଏ । ଗ୍ରାମର ମୁଖିଆ ଓ ଅଧିକାରୀମାନେ ଲାଞ୍ଚ ନେଉଥିଲେ । ଆଉ ସେଇ ଦେଶର ଗରିବ କ'ଣ ବଡ଼ଲୋକ କ'ଣ ମଦ ପିଇବା ଥିଲା ସମସ୍ତଙ୍କର ବଦଭ୍ୟାସ । ପଇସା ଯେପରି ପାଣି ପରି ସେଥିରେ ଖର୍ଚ୍ଚ ହେଉଥିଲା, ସ୍ୱାସ୍ଥ୍ୟ ମଧ୍ୟ ଖୁବ୍ ଖରାପ ହୋଇଯାଉଥିଲା ।

ସେହି ଦେଶରେ ସାରଙ୍ଗ ନାମକ ଜଣେ ସାଧୁ ଥା'ନ୍ତି । ସେ ଭାବିଲେ, ଦେଶର ଏହିସବୁ କୁପ୍ରଥାକୁ ଦୂର କରିବାକୁ ହେଲେ ନିରକ୍ଷର ଜନତାଙ୍କୁ ପ୍ରଥମେ ଶିକ୍ଷା ଦେବାକୁ ପଡ଼ିବ । ତେଣୁ ସେ ଜନତାଙ୍କୁ ସାକ୍ଷର କରାଇବାକୁ ଓ କୁପ୍ରଥାସବୁ ଦୂର କରାଇବାକୁ ଏକ ପ୍ରକାର ଆନ୍ଦୋଳନ ଚଳାଇଲେ । ଅନେକ ତାଙ୍କ ଆନ୍ଦୋଳନର ବିରୋଧ କଲେ । କିନ୍ତୁ ଯୁବକ-ଗୋଷ୍ଠୀ ତାଙ୍କୁ ସମର୍ଥନ କଲେ । ଦେଶର ରାଜା ସେହି ଆନ୍ଦୋଳନକୁ ଦମନ କରିବା ପାଇଁ ଚେଷ୍ଟା କଲେ । କିନ୍ତୁ ସୈନିକମାନେ ଜନତା ସହିତ ମିଶି ରାଜାଙ୍କୁ ଗାଦିଚ୍ୟୁତ କଲେ ଓ ସାରଙ୍ଗଙ୍କୁ ଅନୁରୋଧ କଲେ ରାଜା ହେବାକୁ ।

କିନ୍ତୁ ସାରଙ୍ଗଙ୍କର ସେପରି ଇଚ୍ଛା ନ ଥିଲା । ତେଣୁ ସେ ତାଙ୍କର ମୁଖ୍ୟ ଅନୁଚର ପ୍ରଦୀପକୁ ରାଜ୍ୟର ଶାସନ ଭାର ଦେଇ ତପସ୍ୟା କରିବାକୁ ଜଙ୍ଗଲକୁ ଚାଲିଗଲେ । କିନ୍ତୁ ଯିବା ପୂର୍ବରୁ ବାରଂବାର କହିଗଲେ ଯେପରି ପ୍ରଦୀପ ଜନତାଙ୍କ ଭିତରେ ଥିବା କୁପ୍ରଥା ଓ ବଦଭ୍ୟାସକୁ ସବୁମତେ ଦମନ କରେ । ତା'ପରେ ସେ

ଜଙ୍ଗଲରେ ଗୋଟିଏ ଛୋଟ ଆଶ୍ରମ କରି ପ୍ରାୟ ପନ୍ଦର ବର୍ଷ ରହିଲେ । ହଠାତ୍ ଦିନେ ସୁଦର୍ଭ ଦେଶ କଥା ତାଙ୍କର ମନେ ପଡ଼ିଲା ।

ସେ ତାଙ୍କର ଜଣେ ଶିଷ୍ୟଙ୍କୁ ପ୍ରଦୀପ ପାଖକୁ ପଠାଇ ଖବର ଦେଲେ ଯେ ସେ ଦେଶର ଅବସ୍ଥା ପରିଦର୍ଶନ କରିବାକୁ ଆସିବେ । ପ୍ରଦୀପ ଏ କଥା ଶୁଣିବା ମାତ୍ରେ ଗୋଟାଏ ରଥରେ ବସି ଆଶ୍ରମକୁ ଆସିଲା ଓ ସାରଙ୍ଗଙ୍କୁ ନେଇ ଫେରିଲା ।

ସାରା ଦେଶରେ ସାରଙ୍ଗଙ୍କୁ ସ୍ୱାଗତ କରାହେଲା । ସାରଙ୍ଗ ପ୍ରଦୀପ ସହିତହିଁ ଦେଶଭ୍ରମଣ କରୁଥାନ୍ତି । ସେ ପ୍ରଥମେ ଗଲେ କାରାଗାରକୁ ଦେଖିବା ପାଇଁ । ସେଠାରେ ଅପରାଧୀମାନଙ୍କ ମଧ୍ୟରେ ଥିଲେ ଯୌତୁକ ନେବାବାଲା ଶ୍ୱଶୁର, ମଦ୍ୟପାୟୀ, ଲାଞ୍ଚ ନେଉଥିବା ଅପରାଧୀ ଓ ଅନ୍ୟାନ୍ୟ ନାନା ରକମର ଅପରାଧୀ ।

ପ୍ରଦୀପ ସାରଙ୍ଗଙ୍କୁ ବୁଝାଇଲା, “ରାଜକର୍ମଚାରୀମାନେ ବହୁତ ଚେଷ୍ଟା କରି ଅପରାଧୀମାନଙ୍କୁ ଧରିଛନ୍ତି ଓ ବନ୍ଦୀ କରିଛନ୍ତି । ତେଣୁ ଅପରାଧ କରି ଧରା ନ ପଡ଼ିବା ସେମାନଙ୍କ ପକ୍ଷରେ କଠିନ ହୋଇପଡ଼ୁଛି ।”

“ଏମାନେ କେବେଠାରୁ କାରାଗାରରେ ରହିଛନ୍ତି ?” ସାରଙ୍ଗ ପଚାରିଲେ ।

“ଆପଣଙ୍କ ଆଦର୍ଶ ମୁଁ ସମ୍ମୁଖରେ ରଖି କେବେ ଏମାନଙ୍କୁ କଠିନ ଦଣ୍ଡ ଦେଇ ନାହିଁ । ଏପରି ଅପରାଧରେ ସେମାନଙ୍କୁ ଛଅମାସରୁ ଅଧିକ କାରାଦଣ୍ଡ ଦିଆଯାଏ ନାହିଁ । ମୁଁ ଭାବୁଛି ଏମାନେ ଏକ ସପ୍ତାହରୁ ଅଧିକ ଦିନ ଏଠାରେ ରହିନାହାନ୍ତି ।” ପ୍ରଦୀପ ବୁଝାଇଲା ।

ସାରଙ୍ଗ ଚମକିଉଠି କହିଲେ, “କ’ଣ ବର୍ତ୍ତମାନ ଆମେ ଏଠାରୁ ଯିବା ?”



ତା'ପରେ ଦୁହେଁ ଗୋଟିଏ ବିବାହ ମଣ୍ଡପ ପାଖରେ ଯାଇ ପହଞ୍ଚିଲେ । ପ୍ରଦୀପ ବୁଝାଇଲା, "ଏହି ମଣ୍ଡପ ନିର୍ମାଣ କରାଇଛି କେବଳ ସେଇମାନଙ୍କ ପାଇଁ ଯେଉଁମାନଙ୍କର ବିବାହରେ ଜାତିଭେଦ ନାହିଁ । ବର୍ତ୍ତମାନ ପର୍ଯ୍ୟନ୍ତ ଏଠାରେ ଶତାଧିକ ବିବାହ ସମ୍ପନ୍ନ ହୋଇସାରିଛି ।" ଏ କଥା ଶୁଣି ସାରଙ୍ଗ ଅନ୍ୟପଟକୁ ଦୃଷ୍ଟି ଫେରାଇଲେ । ପ୍ରଦୀପ ଭାବିଲା ଯେ ସାରଙ୍ଗ ତା' କଥାକୁ ଖୁବ୍ ସମର୍ଥନ କରୁଛନ୍ତି ।

ସେଠାରୁ ଯାଇ ଦୁହେଁ ଏକ କ୍ରୀଡ଼ାସ୍ଥଳରେ ପହଞ୍ଚିଲେ ଯେଉଁଠି କେତେକ ଲୋକ ଖେଳୁଥିଲେ । ପ୍ରଦୀପ ଉତ୍ସାହର ସହିତ ବୁଝାଇଲା, "ଗୁରୁଦେବ, ଦେଖୁନାହାନ୍ତି, ଆପଣ ଯେଉଁ ପରିବର୍ତ୍ତନ ଚାହୁଁଥିଲେ, ସାରା ଦେଶବ୍ୟାପି ସେହିପରି ସବୁ ପରିବର୍ତ୍ତନ ହୋଇଛି ।

"ଏ କପରି ପରିବର୍ତ୍ତନ ?" ସାରଙ୍ଗ ପଚାରିଲେ ।

"ଏଠାରେ କ୍ରୀଡ଼ାସ୍ଥଳରେ ଉଚ୍ଚବର୍ଣ୍ଣ ଓ ନୀଚବର୍ଣ୍ଣ ଭିତରେ ଖେଳ ହୁଏ । କୌଣସି ଜାତିଭେଦ ନାହିଁ ।" ପ୍ରଦୀପ ଉତ୍ତର ଦେଲା ।

"ତୁମେ କପରି ଜାଣିଲ ଯେ ସେମାନଙ୍କ ମଧ୍ୟରେ ନିମ୍ନବର୍ଣ୍ଣର ଲୋକ ମଧ୍ୟ ଅଛନ୍ତି ?" ସାରଙ୍ଗ ପଚାରିଲେ ।

"ଏଠାରେ ଦୁଇଜାତି ମିଳିମିଶି ଖେଳନ୍ତି । ସେଥିପାଇଁ ମୁଁ ଏହି କ୍ରୀଡ଼ାସ୍ଥଳ ନିର୍ମାଣ କରାଇଛି ଯେଉଁଥିରେ କି ଛୁଆଁ ଅଛୁଆଁ ବାରଣ କରିହେବ । ସେଥିପାଇଁ ଉଚ୍ଚଜାତିର ଲୋକ ନାଲି ପୋଷାକ ଓ ନୀଚ ଜାତିର ଲୋକ ହଳଦିଆ ରଙ୍ଗର ପୋଷାକ ପିନ୍ଧି ଖେଳନ୍ତି ।" ପ୍ରଦୀପ ବୁଝାଇଲା ।



ସାରଙ୍ଗଙ୍କ ଆଖିରେ ପାଣି ଆସିଗଲା ।

"କାଲି ଆମେ ଦେଶ ପର୍ଯ୍ୟଟନ କରିବା ।" ପ୍ରଦୀପ କହିଲା ।

"ଆମେ ଯାହା ଯାହା ଦେଖିଲେ ସେସବୁ ଯଥେଷ୍ଟ । ବରଂ ମୁଁ ଫେରିଯିବା ପାଇଁ ଶୀଘ୍ର ବନ୍ଦୋବସ୍ତ କର ।" ସାରଙ୍ଗ କହିଲେ ।

"ଗୁରୁଦେବ ଆପଣ ଏ କ'ଣ କହୁଛନ୍ତି ?" ପ୍ରଦୀପ ପଚାରିଲା ।

"ମୁଁ ଭାବିଥିଲି ଯେ ଏ ଦେଶରେ ନିମ୍ନ ଜାତିର ବୋଲି କେହି ଆଉ ଉଚ୍ଚାରଣ ସୁଦ୍ଧା କରୁ ନ ଥିବେ । ଏଠାରେ ତ ଛୁଆଁ ଅଛୁଆଁ ଭାବ ଏବେଯାଏ ଜନତାଙ୍କ ମଧ୍ୟରେ ଅଛି । ତାଙ୍କ ସହିତ ମିଳାମିଶି ଚଳିଲେ ବି ବଡ଼ପଣିଆ ଓ ପାର୍ଥକ୍ୟ ତଥାପି ଜାତିଙ୍କର ଅଛି । ଆଉ ଅଜାତିରେ ବିବାହ ପ୍ରଥା କେବଳ ପୁରସ୍କାର ପାଇଁ ହେଉଛି କିନ୍ତୁ ଜନତା ସେସବୁ ନିଜଠୁ ଆରମ୍ଭ କରୁନାହାଁନ୍ତି । ଯୌତୁକ ପ୍ରଥା, ମଦ୍ୟପାନ ଓ ଲାଞ୍ଚ ଅଭିଯୋଗ ଏ ପର୍ଯ୍ୟନ୍ତ ସେମାନଙ୍କ ଭିତରେ ଅଛି ଏବଂ ସେଥିପାଇଁ ସେମାନଙ୍କୁ ଦଣ୍ଡ ଦିଆଯାଉଛି । ରାଜା ହୋଇ ତୁମେ ଯଦି ଏ କଥା ବୁଝିପାରୁନାହଁ ତେବେ କ'ଣ କରାଯିବ ? ଜନତାଙ୍କ ମନ ମଧ୍ୟରେହିଁ ପରିବର୍ତ୍ତନ ଆପେ ଆପେ ଆସନ୍ତା । ମୋ ଦ୍ୱାରା ଶିକ୍ଷାପ୍ରାପ୍ତ ହୋଇ ତୁମେ ଯଦି ମୌଳିକ ତ୍ରୁଟିଗୁଡ଼ିକ ନ ବୁଝିଲ ତେବେ ଅନ୍ୟମାନଙ୍କଠାରୁ କ'ଣ ବା ଆଶା କରାଯିବ ? ମୁଁ ତୁମକୁ ଜନତାଙ୍କର ନେତା କରି ଭୁଲ କରିଛି । ଥରେ ଯେତେବେଳେ ଭୁଲ କରିଛି କିଏ କହିବ ପୁଣି ଭୁଲ କରି ନ ବସିବି । ତେଣୁ ମୋ ମନରେ ଦେଶ ବିଷୟରେ ଆଉ କିଛି ଜାଣିବାର ଆଗ୍ରହ ନାହିଁ । ଆଶ୍ରମକୁ ଫେରିଯିବା ପାଇଁ ମୋର ସମସ୍ତ ବନ୍ଦୋବସ୍ତ କରିଦିଅ । ତେଣିକି ତୁମେ ନିଜ ଇଚ୍ଛା ଅନୁସାରେ ଶାସନ କର । ମୁଁ ଯାଉଛି ଏବଂ ଆଉ କେବେ ଏ ଦେଶକୁ ଫେରିବି ନାହିଁ ।" ସାରଙ୍ଗ କହିଲେ ।





# ଚତୁର ଭଣଜା

ମାଳତୀର ଯେତେବେଳେ ସ୍ୱାମୀ ମରିଗଲେ ସେତେବେଳେ ଘରେ ଅଳ୍ପ କିଛି ଧନ ଥାଏ । ସେଇଥିରେ ସେ ତା'ର ତିନୋଟି ପୁଅଙ୍କୁ କିଛି ଦିନ ଚଳେଇନେଲା । କିନ୍ତୁ ସେତକ କ୍ରମେ ସରିଆସିବାରୁ ଘର ଚଳାଇବା ବଡ଼ କଠିନ ହେଲା । ଜମିରେ ଫସଲ ବି ହୋଇ ନ ଥାଏ, ଆଉ ବଡ଼ ପୁଅକୁ କେଉଁଠି କାମ ମଧ୍ୟ ଜୁଟିଲା ନାହିଁ ।

କ'ଣ କରିବ କିଛି ଠିକ୍ କରି ନ ପାରି ମାଳତୀ ତାର ବଡ଼ ପୁଅକୁ ସୀତାପୁରରେ ଥିବା ଭାଇ ଘରକୁ ପଠାଇଦେଲା । ସେ ଜାଣିଥିଲା ଯେ ତା' ଭାଇ ଭାଉଜ ଅନ୍ୟର ଉପକାର କେବେ କରନ୍ତି ନାହିଁ । ତଥାପି ଆଶା ରଖି ପଠାଇଲା ।

କିନ୍ତୁ ଆଶ୍ଚର୍ଯ୍ୟର କଥା ସପ୍ତାହେ ହୋଇ ନାହିଁ ପିଲଟି ମାମୁଁ ଘରୁ ଫେରିଆସି କହିଲା, "ମାଇଁଙ୍କ ଦେହ ଭଲ ନାହିଁ, ଯେତେବେଳେ ଭଲ ହେବ ସେ ନିଜେ ଆସି ମୋତେ ଡାକି ନେବେ ଓ ମାସ ମାସ ଧରି ତାଙ୍କ ଘରେ ରଖିବେ । ମାମୁଁ ମୋତେ ଏଇ କଥା କହିଲେ ।"

ମାଳତୀ ଭାଇଭାଉଜଙ୍କ କୃପଣପଣିଆ କଥା ଭାବି ଦୁଃଖିତ ହେଲା । ବହୁ କଷ୍ଟରେ ଘରର କଂସାବାସନ ବିକି କରି ଚଳୁଥାଏ । ଆହୁରି କେତେଦିନ ଏହିପରି ଚଳିବେ ଭାବି ମାଳତୀର ମନ ବଡ଼ କଷ୍ଟ ହୁଏ । ତେଣୁ ଲଜ୍ଜା ଦୂରି କରି ପୁଣି ଦ୍ୱିତୀୟ ପୁଅଟିକୁ ସେ ମାମୁଁ ଘରକୁ ପଠାଇଲା ।

କିନ୍ତୁ ସେ ତିନିଦିନ ପରେ ଲେଉଟି ଆସିଲା । ମାଳତୀ ଦୁଃଖ ଓ ରାଗରେ କହିଲା, "ଏତେ ଚଞ୍ଚଳ କାହିଁକି ଚାଲିଆସିଲୁ ? ଯା', ମୁଁ ଆଉ ତୁମମାନଙ୍କୁ ପୋଷିପାରିବି ନାହିଁ । ଯାଅ ସବୁ

ଏହିକ୍ଷଣି କୁଆଡ଼େ ପଳାଅ ଏଠୁ ।"

ତୃଷ୍ଣାପୁ ପୁଅଟି ସବୁ ଶୁଣି କହିଲା, "ମା, ମୁଁ ଯାଇ କିଛିଦିନ ମାମୁଁ ଘରେ ରହି ଆସନ୍ତ ।" ଏକଥା କହି ସେ ସିଧା ସୀତାପୁର ଚାଲିଗଲା ।

ଯିମିତି ମାମୁଁ ଘରେ ଯାଇ ପହଞ୍ଚିଛି, ତା' ମାଇଁ ସେତେବେଳେ ଭଲ ଜିନିଷସବୁ ଖାଉଥିଲା, ଯାହାକୁ ଦେଖି ସବୁ ଲୁଚାଇଦେଲା ଓ ଚାଦର ଘୋଡ଼େଇ ହୋଇପଡ଼ି ଖଟରେ ଶୋଇଗଲା ।

ଭଣଜାକୁ ଦେଖି ମାମୁଁ କହିଲା, "ପୁଅ, ତୋ ମାଇଁର ଦେହ ଏକବାରେ ଖରାପ । ସାରା ଘରର କାମ ମୋତେ ସମ୍ଭାଳିବାକୁ ହେଉଛି । ତେଣେ ପୁଣି ଜମିରେ ଚାଷ କାମ । କାମ କରି କରି ମୁଁ ହାଲିଆ ହୋଇଗଲିଣି ।"

ପିଲାଟି କିନ୍ତୁ ମାମୁଁର କଥା ଶୁଣି କହିଲା, "ମାମୁଁ, ତୁମେ ଏତେ କଷ୍ଟ କରୁଛ ମୁଁ ଜାଣି ନ ଥିଲି । ମୁଁ ବର୍ତ୍ତମାନ ଯାଉଛି ମା' ଓ ଭାଇମାନଙ୍କୁ ଏଠାକୁ ଡାକିଆଣିବି । ମା' ଘରର କାମ କରିବ ଆଉ ଆମେ ତିନିଭାଇ ଜମିରେ କାମ କରିବୁ । ତୁମେ ମଜାରେ ଘରେ ବସିରହିବ । କିଛି କାମ କରିବା ଦରକାର ନାହିଁ ।"

ମାମୁଁ ଦେଖିଲେ ସିଏ ଯେତେ ଛଳନା କଲେ ବି ଭଣଜା ଆହୁରି ଚାଲାକ । ସେ ଆଖି ବଡ଼ ବଡ଼ କରି ଭଣଜାକୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା । କିନ୍ତୁ ମାଇଁ ଅବସ୍ଥାଟି ଠିକ୍ ବୁଝିନେଲା । ସେ ଚାଦର ଫୋପାଡି ଦେଇ ଉଠି ବସିଲା ଓ କହିଲା, "ହେଇଟି, ତୁମେ ଚୁପ୍‌ହୋଇ ବସିଛ କ'ଣ ? ଦେଖୁନ ତୁମ ଭଣଜାର ମୋ ପ୍ରତି କି ସହାନୁଭୂତି ? ମୋ ଦେହ ଖରାପ କଥା ଶୁଣୁ ଶୁଣୁ ସେ ମା'କୁ ଡାକି ଆଣିବାକୁ ଚାହୁଁଛି । ତୁମ ମନ ଭିତରେ ଏ କଥା କେବେ ଭାବିଥିଲ ? ମୋର ଅସୁସ୍ଥତା ବିଷୟରେ ଚିନ୍ତା ନ କରି ଯାଅ ଜମିରେ ନିଜର ଚାଷବାସ କାମ ବୁଝ । ଆମେ ଦି'ଜଣ ଘରକାମ ସମ୍ଭାଳିନେବା ।" ଏ କଥା କହି ମାଇଁ ଗାଁକୁ ଯିବାକୁ ବସିଥିବା ଭଣଜାକୁ ରହିଯିବାକୁ କହିଲା ।

ଚତୁର ଭଣଜା ଟିକିଏ ଲୁଚାଇ ହସିଦେଇ ତା'ପରେ କହିଲା, "ମାଇଁ, ମୁଁ ଭଣଜା ହୋଇ ତୁମ ଦୁଃଖ ନ ବୁଝିଲେ ବୁଝିବ କିଏ ?"





# ଦୁଇକନ୍ୟା

ଶ୍ରୀଧର ନାମରେ ଗୋଟିଏ ଯୁବକ ଥାଏ ।

ତା'ର ସବୁ ଫସଲ ପ୍ରାୟ ବଢ଼ିରେ ନଷ୍ଟ ହୋଇଯିବାରୁ ସେ ଅନ୍ୟ କିଛି ଜୀବିକା ଅର୍ଜନର ପନ୍ଥା ନେବା ଉଦ୍ଦେଶ୍ୟରେ ଗ୍ରାମ ଛାଡ଼ି ସହରକୁ ଗଲା ।

ସହର ନିକଟରେ ଗୋଟିଏ ନଦୀ ବହିଯାଉଥିଲା । ଶ୍ରୀଧର ନଦୀଟିରେ ସ୍ନାନ ସାରି ଲୁଗା ବଦଳାଉଛି, ଦେଖିଲା ଶ୍ୟାମଳ ବର୍ଣ୍ଣର ଝିଅଟିଏ ପାଣି ନେବାକୁ ତୁଠକୁ ଯାଉଛି ।

ଶ୍ରୀଧର ତାକୁ ଡାକି ପଚାରିଲା, "ଶୁଣ, କଚେରିରେ କାମ କରୁଥିବା ବୀରେନ୍ଦ୍ରବାବୁଙ୍କ ଘର ତୁମେ ଜାଣ କି ?

"ହଁ ଜାଣେ, ତାଙ୍କ ଘର ଆମ୍ଭ ଘର ପାଖରେ । ତାଙ୍କ ଝିଅ ଯମୁନା ମୋର ସାଙ୍ଗ । ମୋ ନାମ ଗଙ୍ଗା । ତାଙ୍କ ଘରଟି ଠିକ୍ ହନୁମାନଜୀଙ୍କ ମନ୍ଦିର ପାଖରେ ।" ବାଟ ବତେଇଦେଇ ଗଙ୍ଗା ପାଣି ଆଣିବାକୁ ଯାଇ ହଠାତ୍ ନିଜ ଗଳାରେ ହାତ ଦେଇ ଚମକିପଡ଼ିଲା ।

ଶ୍ରୀଧର ପଚାରିଲା, "କ'ଣ ହେଲା କି ?"

"ମୋ ଗଳାରୁ ହାରଟି କୁଆଡ଼େ ଖସିପଡ଼ିଛି । ଆଜି ମୋର ସାବତ ମା' ମୋ ଜୀବନ ଖାଇବ । କରିବି କ'ଣ ?" ଗଙ୍ଗା ଦୁଃଖିତ ହୋଇ କହିଲା ।

ଶ୍ରୀଧର ବୁଝିଲା ତା' ସାବତମା' ନିଶ୍ଚୟ ଖୁବ୍ କଡ଼ା ଲୋକ; ବିଚରା ହଇରାଣ ହେବ ବୋଲି ସେ ବି ବହୁତ ଖୋଜିଲା, କିନ୍ତୁ ହାର ମିଳିଲା ନାହିଁ ।

ଗଙ୍ଗା ଆଖିରୁ ଲୁହ ପୋଛି ପୋଛି ନୀରବରେ ପାଣିମାଠିଆ ଧରି ଚାଲିଗଲା । ତା'ପରେ ଶ୍ରୀଧର ମଧ୍ୟ ସହର ଭିତରକୁ ଗଲା । ସେ ନଦୀ କୂଳରେ ଥିବା ମନ୍ଦିର ପାଖରେ ଟିକିଏ ରହିଗଲା । ତେଣୁ

ରାମଲାଲ



ଗଙ୍ଗା ଆଗରେ ଚାଲିଗଲା ଓ ସେ ପଛରେ ଗଲା । ସେତେବେଳକୁ ସହରର ଭିଡ଼ ବଢ଼ି ନ ଥାଏ ।

ଶ୍ରୀହରି ମନ୍ଦିର ପାଖରୁ ଅଳ୍ପ ଦୂର ଯାଇଛି ହଠାତ୍ ଗୋଟିଏ ହାର ରାସ୍ତା ଉପରେ ପଡ଼ିଥିବାର ଦେଖିଲା । ସେ ହାରଟିକୁ ରାସ୍ତାରୁ ଗୋଟାଇ ଭାବିଲା ସେଇଟି ଯେତେ ଶୀଘ୍ର ସେ ଗଙ୍ଗାକୁ ଦେବ ଭଲ; ତା'ହେଲେ ସେ ସାବତ-ମା'ର ଗାଳିରୁ ରକ୍ଷା ପାଇବ ।

ସେ ଯାଇ ଗଙ୍ଗାଘରେ ପହଞ୍ଚି ଦେଖିଲା ଗଙ୍ଗା ବିଚାରି ଅଇଁଠା ବାସନ ମାଜୁଛି । ସେ ହାରଟି ନେଇ ଗଙ୍ଗାର ସାବତମା'କୁ ଦେଇ କହିଲା, "ମା, ଏଇ ହାରଟି ବୋଧେ ଗଙ୍ଗାର, ମୁଁ ରାସ୍ତାରୁ ପାଇଲି । ଆପଣ ଗଙ୍ଗାକୁ ଗାଳି ଦେବେ ନାହିଁ । ଅଜାଣତରେ ବୋଧେ ପଡ଼ିଯାଇଛି ।"

ଗଙ୍ଗାର ସାବତମା' ଚଟ୍‌କରି ହାରଟି ଶ୍ରୀହରି ହାତରୁ ନେଇଯାଇ କହିଲା, "ଆମ ଜିନିଷ ଆମକୁ ମିଳିଗଲା, ବର୍ତ୍ତମାନ ତୁମେ ଯାଇପାର ।"

ଗଙ୍ଗା ଏ ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଗଲା କିନ୍ତୁ କିଛି କହିଲା ନାହିଁ । ଶ୍ରୀହରି ସେଠାରୁ ଯାଇ ବୀରେନ୍ଦ୍ରବାବୁଙ୍କ ଘରେ ପହଞ୍ଚିଲା । ବୀରେନ୍ଦ୍ରବାବୁ ଶ୍ରୀହରିର ପରିଚୟ ପାଇ ଖୁସୀ ହେଲେ ଓ କିଛି ଚାକିରି ତା'ପାଇଁ ଜୁଟାଇ ଦେବାର ପ୍ରତିଶ୍ରୁତି ଦେଲେ । ତା'ପରେ ଶ୍ରୀହରିର ରହିବା ଓ ଖାଇବା ବିଷୟରେ ବ୍ୟବସ୍ଥା କରିବାକୁ ଝିଅ ଯମୁନାକୁ କହିଲେ ଓ କଚେରି ସମୟ ହୋଇଯିବାରୁ ଚାଲିଗଲେ । ଯମୁନା କିନ୍ତୁ ମୁହଁରୁ ବେଖାତିର ଭାବ ଦେଖାଇଲା ।

କିଛି ସମୟ ପରେ ଖାଇସାରି ଶ୍ରୀହରି ଘରୁ ବାହାରିଲା । ସେହି ସମୟରେ ହଠାତ୍ ଗଙ୍ଗା ଦୌଡ଼ି ଦୌଡ଼ି ଆସି କହିଲା; "ଏହି ହାରଟି ମୋର ନୁହେଁ । ମୋ ହାର ହଜିଯାଇଥିବାରୁ ମୁଁ ବାକ୍‌ସରେ ରଖିଦେଇ ଭୁଲିଯାଇଥିଲି । ଏ ହାରଟି ଆପଣଙ୍କୁ ମିଳିଛି, ଆପଣ ରଖନ୍ତୁ । ମୁଁ ଯାଉଛି । ମୋ ମା' ତେଣେ ଖୋଜୁଥିବ ।"

ଗଙ୍ଗାର ଏହି ନିର୍ଲୋଭପଣିଆ ଓ ସୁନ୍ଦର ସରଳ ବ୍ୟବହାରରେ ଶ୍ରୀହରି ମୁଗ୍ଧ ହେଲା । ହାରଟି ନିଜ ଥଳିରେ ରଖି ସେ ଶୋଇଗଲା । କିଛି ସମୟ ପରେ ନିଦରୁ ଉଠି ଦେଖିଲା ବୀରେନ୍ଦ୍ରବାବୁ କଚେରିରୁ ଫେରିଛନ୍ତି । କିନ୍ତୁ ଯମୁନା ଘରେ ନ ଥିଲା । ପଡ଼ୋଶାଘରେ ବାହା-

ଘର କନ୍ୟାସଜ ଦେଖିବାକୁ ଯାଇଥିଲ । ଶ୍ରୀହରି ଓ ବୀରେନ୍ଦ୍ରବାବୁ କଥାବାର୍ତ୍ତା ହେଉଛନ୍ତି, ଏହି ସମୟରେ ଜଣେ ସିପାହି ଆସି ଶ୍ରୀହରିଙ୍କୁ ଜଣେ ଧନୀଙ୍କ ଘରକୁ ଯିବା ପାଇଁ ଆଦେଶ ଦେଲେ । ବ୍ୟସ୍ତ ହୋଇ ବୀରେନ୍ଦ୍ରବାବୁ ମଧ୍ୟ ତା'ସହିତ ଗଲେ ।



ସେଠାରେ ପହଞ୍ଚି ଶ୍ରୀହରି ଶୁଣି ଆଶ୍ଚର୍ଯ୍ୟ ହେଲା ଯେ ତା' ବିରୁଦ୍ଧରେ ଚୋରି ଅଭିଯୋଗ । ପ୍ରକୃତ କଥା ହେଉଛି ଧନୀ ଝିଅର ନିର୍ବନ୍ଧ ଦିନ ତା' ଶାଶୁ ତାକୁ ଏକ ମୂଲ୍ୟବାନ୍ ହାର ଦେଇ-ଥିଲେ । ପରଦିନ ସେହି କନ୍ୟା ସାଙ୍ଗସାଥୀଙ୍କ ସହିତ ମନ୍ଦିର ଯାଇଥିଲା । ସେଠାରୁ ଫେରୁ ଫେରୁ ସନ୍ଧ୍ୟା ହୋଇଯାଇଥିଲା ଓ କୌଣସି ଏକ ଚୋର ତା' ଗଳାରୁ ହାରଟି ନେଇ ପଳାଇଲା । କନ୍ୟା ଓ ତା'ର ସାଙ୍ଗମାନେ ଚିତ୍କାର କରିବାରୁ ପାଖଆଖର ଲୋକମାନେ ଚୋରକୁ ଗୋଡ଼ାଇଲେ କିନ୍ତୁ ଧରିପାରିଲେ ନାହିଁ । ଏପରି ଘଟଣାରେ ଦୁଃଖିତ ହୋଇ ଝିଅର ବାପା ଭାବିଲେ ଶୁଭ-କାର୍ଯ୍ୟ ଆରମ୍ଭରେ ଏମିତି ଘଟଣା ହୁଏତ କିଛି ଅଶୁଭ ସଂକେତ ଦେଉଛି ।

ଏଣେ ଯମୁନା ସେହି ହାରଟି ପିନ୍ଧି କନ୍ୟା ଦେଖିବାକୁ ସେଇଠିକୁ ଯାଇଛି । ସେମାନେ ହାରକୁ ଚିହ୍ନିବା ପରେ ଯମୁନାକୁ ଧରିଛନ୍ତି । ଯମୁନା କହିଲା, "ମୁଁ ଏ ହାର ବିଷୟରେ କିଛି ଜାଣେନାହିଁ । ମୋ ବାପାଙ୍କର ସାଙ୍ଗ ଶ୍ରୀହରି ମୋତେ ଏ ହାରଟି ଦେଇଛନ୍ତି ।" ସେଥି ପାଇଁ ଶ୍ରୀହରିକୁ ଚୋର ବୋଲି ଭାବି ସିପାହିମାନେ କାଳବିଳମ୍ବ ନ କରି ଧରିଛନ୍ତି ।

ଏସବୁ କଥା ଶୁଣିବା ପରେ ଶ୍ରୀହରି ବୁଝି-ପାରିଲା ଘଟଣାଟି କ'ଣ । ସେ ଶୋଇଥିବା-ବେଳେ ଯମୁନା ସେଇଟି ନେଇଯାଇ ପିନ୍ଧି ଏଠାକୁ ଆସିଛି ।

ଧନୀ ଭଦ୍ରଲୋକ ଶ୍ରୀହରିକୁ ପଚାରିଲେ, "କ'ଣ, ତୁମେ ଏ ମାଳାଟି ଯମୁନାକୁ ଦେଇଛ ?

"ଆଜ୍ଞା ହଁ ।" ଶ୍ରୀହରି ଉତ୍ତର ଦେଲା ।

"ତେବେ ତୁମେହିଁ ତ ମୋ ଝିଅ କଣ୍ଠରୁ ଏଇଟି କାଲି ନେଇ ପଳାଇଥିଲ, ନୁହେଁ ?" ଧନୀବ୍ୟକ୍ତି ପଚାରିଲେ ।

ଶ୍ରୀହରି ସବୁ ଶୁଣିସାରି କହିଲା, "ମୁଁ ଆଜି ଏଇ ସହରରେ ଆସି ପହଞ୍ଚିଛି । ହୁଏତ ଚୋର ହାତରୁ ହାରଟି ଉପରେ ଖସିପଡ଼ିଛି । ମୁଁ ରାସ୍ତା

କଡ଼ରୁ ହଠାତ୍ ଏଇଟିକୁ ପାଇଥିଲି ମାତ୍ର ।"

ଧନୀବ୍ୟକ୍ତି ଶ୍ରୀଧରର କଥାରେ ବିଶ୍ୱାସ କଲେ ଓ ତାକୁ ଚୋରି ଅଭିଯୋଗରେ ପକାଇଥିବାରୁ ଦୁଃଖିତ ହୋଇ କ୍ଷମା ମାଗିଲେ ଓ କହିଲେ, "ଆମକୁ ଯେ ହାରଟି ମିଳିଯାଇଛି, ସେଇଟା ବଡ଼କଥା । ଅନ୍ତତଃ ବରପକ୍ଷ ଲୋକଙ୍କ ଆଗରେ ଅପମାନିତ ହେବାରୁ ମୁଁ ରକ୍ଷା ପାଇଲି ।" ଏ କଥା କହି ଧନୀବ୍ୟକ୍ତି ଶ୍ରୀଧରକୁ କିଛି ପୁରସ୍କାର ଦେଲେ ।

ବୀରେନ୍ଦ୍ରବାବୁ ବୁଝିଲେ ଯେ ଯମୁନା ଶ୍ରୀଧରର ଥଳିରୁ ହାରଟି ଚୋରି କରିଛି ତେଣୁ ସେ ଶ୍ରୀଧରକୁ କହିଲେ, "ଦେଖ ପୁଅ, ତୁମେ ମୋର ଓ ମୋ ଝିଅର ଦୁହିଙ୍କର ଇଜ୍ଜତ ରକ୍ଷା କରିଛ । ତୁମର ଏହି ଉପକାର ଅମୂଲ୍ୟ, ତାକୁ କୌଣସି ବାଟରେ ସୁଝିହେବ ନାହିଁ । ମୁଁ ଯମୁନାକୁ ତୁମ ସହିତ ବିବାହ ଦେବାକୁ ଚାହୁଁଛି ।"

ଏ କଥା ଶୁଣି ଶ୍ରୀଧର ନମ୍ର ଭାବରେ କହିଲା, "ଆପଣ ଦୟାକରି ମୋତେ କ୍ଷମା କରନ୍ତୁ । ଆପଣ ମୋ ଭଲ ଗୁଣରେ ମୁଗ୍ଧ ହୋଇଛନ୍ତି, କିନ୍ତୁ ମୁଁ ଆପଣଙ୍କ ଝିଅର ବୁଦ୍ଧିକୁ ପସନ୍ଦ କରିପାରୁ ନାହିଁ । ଗଙ୍ଗା ହୁଏତ ଦେଖିବାକୁ ସୁନ୍ଦର ନୁହେଁ, କିନ୍ତୁ ତା'ର ସତ୍ୟବାଦିତା ଦେଖି ମୁଁ ଖୁବ୍ ଖୁସୀ ହୋଇଛି । ସେ ଜାଣେ ହାରଟି ମୋତେ ଫେରାଇଲେ ତା' ମା' ତାକୁ ଗାଳି ଦେବ । ତଥାପି ସେ ହାରଟି ମୋତେ ଫେରାଇ ଦେଲା । କିନ୍ତୁ ସେଇ ହାରକୁ ଆପଣଙ୍କ ଝିଅ ଓଲଟା ଚୋରି କଲା । ଆପଣହିଁ ବିଚାର କରି ଦେଖନ୍ତୁ ଦୁଇଜଣଙ୍କ ଭିତରେ କେତେ ଫରକ୍ । ଧନୀବ୍ୟକ୍ତିଙ୍କଠାରୁ ଯେଉଁ ଧନ ମୋତେ ମିଳିଛି ସେଥିରେ କୌଣସି ବ୍ୟବସାୟ କରିବି ଭାବିଛି । ଆଉ ଗଙ୍ଗାର ଯଦି କିଛି ଆପତ୍ତି ନ ଥାଏ, ତାକୁହିଁ ବିବାହ କରିବି ।"

ବୀରେନ୍ଦ୍ରବାବୁ ଶ୍ରୀଧର କଥାର ସତ୍ୟତା ଉପଲବ୍ଧି କରି ଚୁପ୍ ରହିଲେ ।





# ଅପାଠୁଆର ବିଦ୍ୟା !

ଗୋପୁର କୌଣସି ବିଦ୍ୟାରେ ମନ ଲାଗେ ନାହିଁ । ବଢ଼େଇ କାମଠୁ ଆରମ୍ଭ କରି କଳାବିଦ୍ୟାଯାଏ ତା' ବାପା ସବୁଥିରୁ ତାକୁ କିଛି କିଛି ଶିଖାଇଲେ । କିନ୍ତୁ ବିଶେଷ କିଛି ଫଳ ହେଲା ନାହିଁ ।

ଶେଷକୁ ବାପା ତାକୁ ନେଇ ଜଣେ ସାଧୁଙ୍କ ଆଶ୍ରମରେ ଛାଡ଼ିଦେଇ ଆସିଲେ । ସେଠାରେ କେଇବର୍ଷ ରହିବା ଭିତରେ ସେ ଯେ କୌଣସି ଶାସ୍ତ୍ର ପୁରାଣରେ ବ୍ୟୁତ୍ପତ୍ତି ଲାଭ କଲା, ତାହା ନୁହେଁ, କିନ୍ତୁ ଗୁରୁଙ୍କ କଥା, ଉପଦେଶ ମନ ଦେଇ ଶୁଣୁଥାଏ । ଅନେକ ଗଳ୍ପ, ପ୍ରବାଦ ଓ ଶ୍ଳୋକମାନ ମନେରଖିନେଲା । ତାହାରି ଭିତର ଦେଇ ତା' ବୁଦ୍ଧିବିବେକର ବିକାଶ ହେବ ବୋଲି ବୁଝିପାରି ଗୁରୁ ତାକୁ ସେହିସବୁ ଗପିଲେ ଓ ପଢ଼ାଇଲେ ।

କେଇବର୍ଷ ପରେ ଗୋପୁ ଗାଁକୁ ଫେରିଆସିଲା । ଲୋକେ ବହୁତ ଖୁସୀ ହେଲେ । କିନ୍ତୁ ଗୋପୁ ଏଣିକି କ'ଣ କରିବ, ସେ କଥା ସେ ଠଉରାଇ ପାରିଲା ନାହିଁ । ତା' ବାପାମା' ମଧ୍ୟ ପ୍ରଥମେ ଆନନ୍ଦିତ ହୋଇ ତା'ପରେ ପୁଅର ଭବିଷ୍ୟତ କଥା ଚିନ୍ତା କରି ଚିନ୍ତିତ ହେଲେ ।

ସେହି ଗ୍ରାମରେ ଥାଏ ଲକ୍ଷ୍ମଣ ନାମକ ଚଷା । ବର୍ଷେ ତା' କ୍ଷେତରେ ବହୁତ ଭଲ ଫସଲ ହୋଇଥାଏ । ସେ ଫସଲତକ ଘରେ ଆଣି ସାଇତି ରଖିବାକୁ ଚାହୁଁଥାଏ । କିନ୍ତୁ ତା' ସ୍ତ୍ରୀର ଜିଦ୍ ସେ କେଇଖଣ୍ଡି ମୂଲ୍ୟବାନ ଅଳଙ୍କାର ପିନ୍ଧିବ । ଲକ୍ଷ୍ମଣ ମହା ସମସ୍ୟାରେ ପଡ଼ିଲା । ଗୋପୁ ଜଣେ ସାଧୁଙ୍କ ଆଶ୍ରମରେ ରହି ଫେରିଥିବାରୁ ତା'ପ୍ରତି ତା'ର ବିଶେଷ ବିଶ୍ୱାସ ଥାଏ । ସେ ଯାଇ ଗୋପୁକୁ ତା'ର ପରାମର୍ଶ ମାଗିଲା ।

ଗୋପୁ କହିଲା; "ଦେଖ ବାବୁ, ଗହଣା ଖାଲି ଭୂଷଣ ମାତ୍ର ନୁହେଁ, ଦରକାର ବେଳେ ତାହା ବହୁତ କାମରେ ଆସିପାରେ । ତେଣୁ ତୁମେ ଗହଣା କିଣିଦିଅ ।"

ରାଜେଶ

ଲକ୍ଷ୍ମଣ ଗୋପୁର କଥା ମାନି ତା' ସ୍ତ୍ରୀ ଗୃହୁଁ ଥିବା ଅଳଙ୍କାରମାନ କିଣିଦେଲା ।

ଏହାର କେଇଦିନ ପରେ ଲକ୍ଷ୍ମଣ ଘରେ ହଠାତ୍ ନିଆଁ ଲାଗିଗଲା । ଘରସହ ତହିଁ ଭିତରେ ଯେତିକି ଶସ୍ୟ ଥିଲା, ସେସବୁ ବି ପୋଡ଼ିଗଲା । ଭାଗ୍ୟକୁ ବାକି ଶସ୍ୟରେ ସେ ଅଳଙ୍କାର କିଣିଥିଲା । ତା' ସ୍ତ୍ରୀ ବର୍ତ୍ତମାନ ଅଳଙ୍କାରମାନ ଖୋଲି ଦେଲା । ଲକ୍ଷ୍ମଣ ସେସବୁ ବିକି ନୂଆ ଘରଟିଏ ତୋଳିଲା ।

ଲକ୍ଷ୍ମଣ ଜୀବନରେ ଗୋପୁର ପରାମର୍ଶ କେତେ କାମ ଦେଲା, ସେ କଥା ପ୍ରଚାର ହୋଇଯିବା ଫଳରେ ତେଣିକି ଗାଁଲୋକେ ଯେ କୌଣସି ସମସ୍ୟାରେ ପଡିଲେ ତା' ପାଖକୁ ପରାମର୍ଶ ପାଇଁ ଦୌଡ଼ିଲେ । ସେ ନିଜ ବିବେକ ଅନୁସାରେ ପରାମର୍ଶ ଦେଇ ଲୋକଙ୍କୁ ସନ୍ତୁଷ୍ଟ କଲା । ଅନେକ ତାକୁ ପୁରସ୍କାର ମଧ୍ୟ ଦେଲେ । ତା' ଯଶ ବ୍ୟାପିଗଲା ।

ସେତିକିବେଳେ ସେ ଦେଶର ରାଜାଙ୍କ ବିରୁଦ୍ଧରେ ଜଣେ ସାମନ୍ତ ରାଜା ବିଦ୍ରୋହ କଲେ । ରାଜା ଦଳେ ସୈନ୍ୟ ଧରି ସେ ସାମନ୍ତ ରାଜାକୁ ଦମନ କରିବା ନିମନ୍ତେ ଯିବା ବାଟରେ ଲକ୍ଷ୍ମ-ଣର ଗାଁରେ ଛାଉଣି ପକାଇ ରାତିକ ବିତାଇଲେ । ଗାଁରେ ମୁଖ୍ୟ ଲୋକଙ୍କ ସହ ଗୋପୁ ମଧ୍ୟ ରାଜାଙ୍କୁ ଭେଟିଲା । ରାଜା ତା' ସୁନାମ ଶୁଣିଥିଲେ । ତେଣୁ ରାଜା ତାକୁ ପଚାରିଲେ, "ତୁମେ ମୋତେ ଏ ସଙ୍କଟବେଳେ କି ପରାମର୍ଶ ଦେଉଛ ?"

"ମହାରାଜ ! କୁହାଯାଏ, ସାପ ଛୋଟ ହେଲେ ମଧ୍ୟ ତାକୁ ମାରିବାପାଇଁ ଶକ୍ତ ବାଡ଼ି ଦରକାର । ଆପଣ ଆଉ ଅଧିକା ଦଳେ ସୈନ୍ୟ ନେଇଥାନ୍ତୁ ।" ଗୋପୁ କହିଲା ।

ରାଜା ଆଉ ଦଳେ ସୈନ୍ୟ ମଗାଇଦେଇ ବିଦ୍ରୋହ ଦମନ ପାଇଁ ବାହାରିଗଲେ । ବିଦ୍ରୋହୀ ସାମନ୍ତ ନିଜ ଗୁପ୍ତଚର ଜରିଆରେ ରାଜାଙ୍କ ସହ ଆସୁଥିବା ସୈନ୍ୟସଂଖ୍ୟା ଜାଣି ତାକୁ ପ୍ରତିରୋଧ କରିବା ପାଇଁ ପ୍ରସ୍ତୁତ ହୋଇ ରହିଥିଲା । ରାଜା ହାରିଯିବାକୁ ବସିଥିବା ବେଳେ ଅଧିକ ସୈନ୍ୟଦଳ ପହଞ୍ଚି ରାଜାଙ୍କୁ ରକ୍ଷା କଲେ ଓ ବିଦ୍ରୋହୀ ଦଳକୁ ପରାସ୍ତ କଲେ ।

ବିଜୟୀ ରାଜା ଦରବାରକୁ ଫେରି, ଗୋପୁକୁ ଡକାଇ ଅନ୍ୟତମ ମନ୍ତ୍ରୀରୂପେ ନିଯୁକ୍ତ କଲେ ।



# ଉପହାର ଓ ଅର୍ଥ

ଥରେ ଜଣେ ରାଜା ଆପଣା ରାଜ୍ୟର ପାହାଡ଼ିଆ ମୁଲକରେ ଯାଇ ଛାଉଣି ପକାଇଥା'ନ୍ତି । ସେତିକି-ବେଳେ ତାଙ୍କ ଜନ୍ମଦିନ ପଡ଼ିଲା । ବିଶିଷ୍ଟ ଲୋକେ ତାଙ୍କୁ ଦେଖାକରି ନାନାଦି ଉପହାର ଦେଲେ । ସେହି ପାହାଡ଼ରେ ଥା'ନ୍ତି ଜଣେ ଋଷି । ଜଣେ ସ୍ଥାନୀୟ ଆଦିବାସୀ ହାତରେ ଋଷି ମଧ୍ୟ ଭେଟି ରୂପେ ଗୋଟିଏ ଗଣ୍ଠିଲି ପଠାଇଲେ । ଖୋଲି ଦେଖାଗଲା, ତହିଁ ଭିତରେ ରହିଛି ମୁଠିଏ ମାଟି, ଗୋଟିଏ ଫରୁଆରେ କିଛି ପାଣି, କେଇ ଖଣ୍ଡି ପଥର । କେରାଏ ଘୋଡ଼ା କେଶ ଏବଂ ଗୋଟିଏ ନଡ଼ିଆ ।

ରାଜା ବହୁତ ଖୁସୀ ହେଲେ ଏବଂ ଋଷିଙ୍କ ପାଖକୁ ଥଳିଏ ସୁନା ମୋହର ଧରି ନିଜେ ଗଲେ । ଋଷି ଥଳି ଗ୍ରହଣ କରି ପୁଣି ତାହା ରାଜାଙ୍କୁ ଦେଇ କହିଲେ, "ଏହାକୁ ଦେଶ ପାଇଁ ଖର୍ଚ୍ଚ କର ।"

ଜଣେ ଲୋଭୀ ଅମାତ୍ୟ ଏସବୁ ଦେଖି କିଛି ଶୁଖିଲା କାଠ, ବାଲି, ଘାସ ଇତ୍ୟାଦିରେ ଗୋଟିଏ ଗଣ୍ଠିଲି ପ୍ରସ୍ତୁତ କରି ରାଜାକୁ ଭେଟି ଦେଲେ ।

ରାଜା ଗଣ୍ଠିଲି ଖୋଲି ପଚାରିଲେ, "ଏହାର ଅର୍ଥ ?" ଅମାତ୍ୟ କହିଲେ, "ହଜୁର୍ ! ଆପଣ ତ ଋଷି ପଠାଇଥିବା ଚିଜର ଅର୍ଥ ପଚାରି ନ ଥିଲେ !"

"ତା'ର ଅର୍ଥ ମୁଁ ବୁଝିପାରିଥିଲି । ମାଟି ଓ ପାଣିର ଅର୍ଥ ଦେଶର ସମୃଦ୍ଧି । ପଥରର ଅର୍ଥ କିଲ୍ଲାକୁ ଶକ୍ତ କରିବା ଗୃହ । ଘୋଡ଼ା କେଶର ଅର୍ଥ ଅଶ୍ୱାରୋହୀ ବାହିନୀକୁ ଶକ୍ତ କରିବା ଦରକାର । ନଡ଼ିଆ ଅର୍ଥ, ମୋ ହୃଦୟ ନଡ଼ିଆ ଭିତରେ ଥିବା ପାଣି ଭଳି ଦୟାବିଗଳିତ ରହିବା ସଙ୍ଗେ ସଙ୍ଗେ ବାହାରକୁ ମୁଁ କଠୋର ଦିଶିବା ଦରକାର । କିନ୍ତୁ ତୁମେ ଯାହା ଦେଲ, ସେଥିରୁ ମୁଁ କିଛି ବୁଝୁନାହିଁ ।" ରାଜା କହିଲେ ।

ଅମାତ୍ୟ ନିଜ ଲୋଭ ଓ ଔଦ୍ଧତ୍ୟ ଯୋଗୁଁ କ୍ଷମା ମାଗିଲେ ।





# କବି-ପରୀକ୍ଷା

ପୁଷ୍ପପୁରର ରାଜଶେଖର ଯେ ଜଣେ ପ୍ରତିଭାବାନ କବି ଥିଲେ, ସେ କଥା କେହି ଜାଣି ନ ଥିଲେ । ସେ ନିଜେ ପ୍ରେରଣାବଶତଃ କବିତା ରଚନା କରୁଥିଲେ ଠିକ୍, କିନ୍ତୁ ତା'ର ମୂଲ୍ୟ ସମ୍ପର୍କରେ ନିଜେ ମଧ୍ୟ ସଚେତନ ନ ଥିଲେ ।

ସେତେବେଳେ ରାଜଧାନୀରେ ରହୁଥିଲେ ବିଖ୍ୟାତ କବି ନାଗଭୂଷଣ । ରାଜଶେଖରଙ୍କ ଅନ୍ତରଙ୍ଗ ବନ୍ଧୁମାନେ ଥରେ ନାଗଭୂଷଣଙ୍କୁ ନେଇ ନିଜ କବିତାମାନ ଦେଖାଇବାକୁ ରାଜଶେଖରକୁ ପରାମର୍ଶ ଦେଲେ । ରାଜଶେଖର ସଙ୍କୋଚ ଅନୁଭବ କରିବା ସତ୍ତ୍ୱେ କବିତା ପୋଥିମାନ ଧରି ଚାଲିଲେ ।

ନାଗଭୂଷଣଙ୍କୁ ସାକ୍ଷାତ୍ କରି ସେ କହିଲେ, "କବିବର ! ମୁଁ ମୋ ବନ୍ଧୁମାନଙ୍କ କଥାରେ ପ୍ରଭାବିତ ହୋଇ ମୋର ଏ ସାମାନ୍ୟ ରଚନାମାନ ଧରି ଆପଣଙ୍କ ପାଖକୁ ଆସିଛି । ଆପଣ ଅନୁଗ୍ରହ କରି ଏସବୁ ପଢ଼ି ମୋର ବାସ୍ତବିକ କବି ପ୍ରତିଭା ଅଛି କି ନା କହନ୍ତୁ । ଯଦି ନ ଥିବ, ତେବେ ବୃଥାରେ ଆଉ କବିତା ଲେଖି ସମୟ ନଷ୍ଟ କରିବି ନାହିଁ ।"

ନାଗଭୂଷଣ କବିତାଗୁଡ଼ିକ ଉପରେ ଆଖି ବୁଲାଇ ଗଲେ । ତାଙ୍କ ବିସ୍ମୟର ସୀମା ରହିଲା ନାହିଁ । କାରଣ ରାଜଶେଖରଙ୍କ ରଚନା ସାଧାରଣ କବିତା ନ ଥିଲା, ସେସବୁ ଥିଲା ଅତି ଉଚ୍ଚସ୍ତରର ରଚନା । ସେ ନିଜେ ମଧ୍ୟ ସେଭଳି କବିତା କେବେ ଲେଖି ପାରି ନାହାନ୍ତି ।

ନାଗଭୂଷଣଙ୍କ ମୁଣ୍ଡକୁ ଗୋଟାଏ ଦୁର୍ବୁଦ୍ଧି ଆସିଲା । ସେ କହିଲେ, "ଯୁବକ ! ସଙ୍ଗେ ସଙ୍ଗେ କବିତାର ମୂଲ୍ୟାୟନ କରିବା ସମ୍ଭବ ନୁହେଁ । ଏସବୁ ମୋଠାରେ ଥାଉ । ତୁମେ ମାସଟିଏ ଛାଡ଼ି ଆସ ।"

ରାଜଶେଖର ଚାଲିଗଲେ । ମାସକ ପରେ ସେ ଫେରି ଆସି ନାଗଭୂଷଣଙ୍କୁ ଅଭିବାଦନ

ଜଣାଇ ବିନମ୍ର ଭାବରେ ଠିଆ ହେଲେ ।

"ତୁମେ କିଏ ?" ନାଗଭୂଷଣ ଆଶ୍ଚର୍ଯ୍ୟ ହେବାର ଅଭିନୟ କରି ପଚାରିଲେ ।

"ମାସକ ତଳେ ଆପଣଙ୍କୁ ଭେଟି ମୋ କବିତାଟିକ ପଢ଼ିବାକୁ ଦେଇ ଯାଇଥିଲି । ଆପଣ ମୋତେ ଥରେ ମାତ୍ର ଦେଖିଥିଲେ । ତେଣୁ ଚିହ୍ନି ପାରୁନାହାନ୍ତି ।" ରାଜଶେଖର ନମ୍ର ଭାବରେ କହିଲେ ।

"କବିତା ଦେଇଯାଇଥିଲ ? ତୁମେ ନିଶ୍ଚୟ ଭୁଲ୍ କରୁଛ । ଆଉ କାହାକୁ ଦେଇଥିବ !" ନାଗଭୂଷଣ କହିଲେ ।

"ଆଜ୍ଞା, ତାହା କ'ଣ ସମ୍ଭବ ? ଆପଣହିଁ ବିଖ୍ୟାତ କବି ନାଗଭୂଷଣ । ଆପଣଙ୍କୁ ଛାଡ଼ି ଆଉ କାହାକୁ କାହିଁକି କବିତା ଦେଖାଇବି ? ଆପଣ ଦୟାକରି ଥରେ ଖୋଜି ଦେଖନ୍ତୁ । ମୋ ପାଣ୍ଡୁଲିପି ଘରେ ଥିବ ନିଶ୍ଚୟ । ଆପଣ ଭାବୁକ ଲୋକ; ଭୁଲି ଯାଇଛନ୍ତି ।" ରାଜଶେଖର କହିଲେ ।

"ଦେଖ ବାବୁ, ମୋତେ ବିରକ୍ତ କର ନାହିଁ । ଯାଅ । ତୁମେ ମୋତେ କବିତା ପୋଥି ଦେଇ ଥିଲ ବୋଲି ସାକ୍ଷୀ କିଏ ?" ନାଗଭୂଷଣ ରାଗିଯାଇ କହିଲେ ।

ରାଜଶେଖର ତଟସ୍ଥ ହୋଇ ରହି ତା'ପରେ କହିଲେ, "ଓ, ଏପରି କଥା ! ସାକ୍ଷୀ ପ୍ରମାଣ କଥା ଯେତେବେଳେ ଉଠାଇଲେଣି, ମୁଁ ଆପଣଙ୍କ ମତଲବ ଅନୁମାନ କରି ପାରୁଛି ।"

ରାଜଶେଖର ରାଜଧାନୀରେହିଁ ରହିଲେ । ଦୁଇ ଦିନ ପରେ ସେ ଶୁଣିଲେ, ଦରବାରରେ କବି ନାଗଭୂଷଣ ନୂଆ କବିତା ଶୁଣାଇବେ । ସେ ମଧ୍ୟ ଯାଇ ଦରବାରରେ ଅପେକ୍ଷା କଲେ ।



ନାଗଭୂଷଣ କବିତା ଆବୃତ୍ତି କରିବାକୁ ଆରମ୍ଭ କଲା ମାତ୍ରେ ସେ ଉଠିପଡ଼ି କହିଲେ, "ପ୍ରଭୁ! ଏ କବିତା ମୋର !"

ସଭାରେ ବିଶୃଙ୍ଖଳା ଖେଳିଗଲା । ରାଜା ପାଣ୍ଡୁଲିପି ହାତକୁ ନେଇ କହିଲେ, "ଯୁବକ ! ତୁମେ କ'ଣ ବାତୁଳ ? ମୁଁ ନାଗଭୂଷଣଙ୍କ ହସ୍ତାକ୍ଷର ଜାଣେ । ଏ ଲେଖା ତାଙ୍କର ।"

"ମହାରାଜ ! ମାସେ ଧରି ମୋ ପାଣ୍ଡୁଲିପି ତାଙ୍କ ପାଖରେ ଥିଲା । ସେ ମୋ କବିତା ଉତାରି ନେଇଛନ୍ତି ଓ ହୁଏତ ମୋ ପାଣ୍ଡୁଲିପି ନଷ୍ଟ କରି ଦେଇଛନ୍ତି !" ରାଜଶେଖର କହିଲେ ।

ରାଜା ଦେଖିଲେ ଏ ବଡ଼ ବିଷମ ସମସ୍ୟା । ସେ ପାଣ୍ଡୁଲିପି ଉପରେ ଆଖି ବୁଲାଇ ଦେଖିଲେ ତାହା ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ।

ରାଜା କହିଲେ, "ସତ ମିଛ ମୁଁ ଜାଣି ନାହିଁ । ତେବେ ଏ କବିତା ଯିଏ ମୋ ନାମରେ ଉତ୍ସର୍ଗ କରିବାକୁ ରାଜି ହେବ, ମୁଁ ତାକୁହିଁ ଏହାର କବି ବୋଲି ସ୍ୱୀକାର କରିବି ଓ ପୁରସ୍କାର ଦେବି ଏହାହିଁ ମୋର ସିଦ୍ଧାନ୍ତ ।"

ରାଜାଙ୍କ ସିଦ୍ଧାନ୍ତ ଶେଷ ନ ହେଉଣୁ ନାଗଭୂଷଣ କହିଲେ, "ହଜୁର୍ ! ଏହାଠୁଁ ବଳି ଗୌରବର ବିଷୟ ଆଉ କ'ଣ ଅଛି ? ମୁଁ ଏ ପୋଥି ଆପଣଙ୍କୁ ଉତ୍ସର୍ଗ କରିବି । ଶୀଘ୍ର ଉତ୍ସର୍ଗ ପତ୍ର ପ୍ରସ୍ତୁତ କରି ଦେବି ।"

"ତୁମେ କ'ଣ କହୁଛ ?" ରାଜା ରାଜଶେଖରଙ୍କୁ ପଚାରିଲେ ।

"ମହାରାଜ ! ମୁଁ ଏ କବିତା ରାମଙ୍କୁ ସମର୍ପଣ କରିସାରିଛି । କେଉଁ ସାହସରେ ତାହା ପୁଣି ଆପଣଙ୍କୁ ଉତ୍ସର୍ଗ କରିବି ? ତା' ଛଡ଼ା ପୁରସ୍କାର ପାଇଁ ମୋର ଅଭିଳାଷ ନ ଥିଲା ।" ରାଜଶେଖର ଉତ୍ତର ଦେଲେ ।

ରାଜା ଆନନ୍ଦିତ ହୋଇ ରାଜଶେଖରଙ୍କୁ କବି ବୋଲି ସ୍ୱୀକାର କଲେ ଓ ନାଗଭୂଷଣଙ୍କୁ କାରାରୁଦ୍ଧ କରିବାକୁ ଆଦେଶ ଦେଲେ । ଭୀତତ୍ରସ୍ତ ନାଗଭୂଷଣ ସବୁ ମାନିଗଲେ ଓ କ୍ଷମା ପ୍ରାର୍ଥନା କଲେ । ରାଜା ତାଙ୍କୁ କ୍ଷମା ଦେଇ ରାଜଶେଖରଙ୍କୁ ପ୍ରଚୁର ପୁରସ୍କାର ଦେଲେ ।





# ତାନ୍ତ୍ରିକର ମହିମା

ତାରିଣୀ ନିଜକୁ ତାନ୍ତ୍ରିକ ବୋଲାଇ ଲୋକଙ୍କ ଭିତରେ ବେଶ୍ ପ୍ରତିପତ୍ତି ବିସ୍ତାର କରିଥାଏ । ପ୍ରକୃତରେ ତାକୁ ତନ୍ତ୍ରର ତ ଅକ୍ଷର ଜଣା ନ ଥିଲା । କିନ୍ତୁ ନିରୀହ ଲୋକଙ୍କୁ ପ୍ରତାରିତ କରିବା ପାଇଁ ଯେଉଁସବୁ କୌଶଳ ଲୋଡ଼ା ସେସବୁ ସେ ବେଶ୍ ଆୟତ୍ତ କରିଥାଏ ।

ପ୍ରଭାକର କିନ୍ତୁ ତା'ର ସେଭଳି ଦଗାବାଜିରେ ପ୍ରଭାବିତ ହେବାତ ଦୂରର କଥା, ତାକୁ କେମିତି ଠକ ବୋଲି ପ୍ରମାଣିତ କରିବ; ସେହି ସୁଯୋଗକୁ ଠାକ ବସିଥାଏ ।

ତାରିଣୀ ହଠାତ୍ ଜଣେ ଜଣେ ଗୃହସ୍ଥ ଘରେ ପହଞ୍ଚି ମାସେ ଦୁଇମାସ ପାଇଁ ନିଜ ଭରଣ ପୋଷଣ ପାଇଁ ଯାହା ଯାହା ଲୋଡ଼ା ସେସବୁ ଆଦାୟ କରିନିଏ । କେହି ତାକୁ ପ୍ରତ୍ୟାଖ୍ୟାନ କରିବାକୁ ସାହସ କରନ୍ତି ନାହିଁ ।

ଦିନେ ତାରିଣୀ ଯାଇ ପ୍ରଭାକର ଘରେ ପହଞ୍ଚିଲା ଓ କହିଲା, "ମୋତେ ବସ୍ତାଏ ଚାଉଳ, ଟିଣେ ତେଲ, କୋଡ଼ିଏଟା ନଡ଼ିଆ ଦିଅ ।"

"ବସ୍ତାଏ ଚାଉଳ ? ଗୋଟାଏ ଦାନା ମଧ୍ୟ ମୋଠାରୁ ପାଇବ ନାହିଁ । ଯାଅ !" ପ୍ରଭାକର ଶୁଣାଇ ଦେଲା ।

ତା' ପ୍ରତି ଏଭଳି ତାଚ୍ଛଲ୍ୟସୂଚକ ବ୍ୟବହାର ସେଯାଏ କେହି ଦେଖାଇ ନ ଥିଲେ । ଭୀଷଣ କ୍ରୁଦ୍ଧ ହୋଇ ସେ କହିଲା, "ଆରେ ଉଦ୍ଧତ ଯୁବକ ! ତୁ ଜାଣୁ ନା ମୁଁ କେଡ଼େ ବଡ଼ ତାନ୍ତ୍ରିକ । ତୋତେ ପାଠ ପଢ଼ାଉଛି ରହ ।"

"ତୁମେ ମୋର କ'ଣ ଆଲୁଅ କରିବ ?" ପ୍ରଭାକର ଇଚ୍ଛା କରି ତାରିଣୀକୁ ଚିଡ଼ାଇଲା ।

"କ'ଣ କରିବ ? ଆଚ୍ଛା, ଦେଖୁଥା । ଚବିଶ-ଘଣ୍ଟା ଭିତରେ ତୋ ଅବସ୍ଥା କ'ଣ ହେଉଛି

ରବି ପ୍ରକାଶ

ନାଗଭୂଷଣ ତାରିଣୀ ଧମକ ଦେଇ ବିଦାୟ ନେଲା । ତା' ଧମକ ଦୁଇ ଚାରିଜଣ ଆଖପାଖ ଲୋକଙ୍କ କାନରେ ବି ପଡ଼ିଲା ।

ରାତିରେ ତାରିଣୀ ତା'ର ଦୁଇ ଚାରିଜଣ ଯୁବକ ସାଥୀଙ୍କ ସହ ପରାମର୍ଶ କରି କାର୍ଯ୍ୟପନ୍ଥା ସ୍ଥିର କରି ରଖିଲା । ସକାଳ ହେବା ବେଳକୁ ଦେଖାଗଲା ସେ ତଳେ ପଡ଼ି ହାତଗୋଡ଼ କଚାଡ଼ି ହେଉଛି । ଛାତିରେ ଅସହ୍ୟ ଯନ୍ତ୍ରଣା ।

ଯେଉଁ ଲୋକେ ତାନ୍ତ୍ରିକର ଧମକ ଶୁଣିଥିଲେ, ସେମାନେ କହିଲେ, "ତାରିଣୀହିଁ ପ୍ରଭାକରକୁ ଶାସ୍ତି ଦେଉଛି ।" ପ୍ରଭାକରର ଯୁବକ ବନ୍ଧୁମାନେ ଗାଁର ଦୁଇଜଣ ବିଶିଷ୍ଟ ଲୋକଙ୍କୁ ନେଇ ତାରିଣୀ ଘରେ ପହଞ୍ଚି ତାକୁ ପ୍ରଭାକରର ହାଲ୍ ଜଣାଇ କାକୁତିମିନତି ହୋଇ କହିଲେ, "ତୁମରି କରାମତିରୁ ପ୍ରଭାକର କଷ୍ଟ ପାଉଛି । ତୁମେ ତାକୁ ଦୟାକରି ଭଲ କରି ଦିଅ ।"

ତାରିଣୀକୁ ଏ ଖୋସାମୋଦ ବେଶ୍ ସୁଖ ଲାଗିଲା । ସେ ଅଟ୍ଟହାସ୍ୟ ହସି କହିଲା, "ମୋ କରାମତିରୁ ତ ନିଶ୍ଚୟ ! କିନ୍ତୁ ସେ ମରିଗଲେ ବି ମୁଁ ତାକୁ ଭଲ କରିବି ନାହିଁ ।"

ଯୁବକମାନେ ତାକୁ କାବୁ କରି ଧମକ ଦେଲେ, "ତୁମେ ସ୍ୱୀକାର କରିଛ ଯେ ତୁମ ଯୋଗୁଁ ପ୍ରଭାକରର ଏ ଅବସ୍ଥା । ବର୍ତ୍ତମାନ ପାଞ୍ଚ ମିନିଟ୍ ଭିତରେ ତାକୁ ଭଲ ନ କଲେ ତୁମକୁ ତା' ସହ ମରିବାକୁ ହେବ ।"

ତାରିଣୀ ବିପଦ ବୁଝି କହିଲା, "ମୁଁ ଭଲ କରିବି କିପରି ? ମୁଁ କ'ଣ ତାକୁ କିଛି କରିଛି ?"

"ତୁମେ ତନ୍ତ୍ର କରିବାର ଧମକ ଦେଇ ନ ଥିଲ ?" ଭଦ୍ରଲୋକ ଦୁଇଜଣ ପଚାରିଲେ ।

"ମୁଁ ତନ୍ତ୍ର ଜାଣେ ଯେ କରିବି ?" ତାରିଣୀ ପ୍ରାଣ ବିକଳରେ ସ୍ୱୀକାର କଲା ।

"ସତ କହିଛ !" ଏହା କହି ହସି ହସି ପ୍ରଭାକର ସେଠାରେ ପହଞ୍ଚିଲା । ସେହିଦିନଠୁ ତାରିଣୀ ମେହେନତ କରି ପେଟ ପୋଷେ ।






ମଣିପୁର ରାଜ୍ୟର ଜା ମଣିଧ୍ୱଜ କେବଳ ଯେ ପରାକ୍ରମୀ ଥିଲେ ତାହା ନୁହେଁ, ସେ ଥିଲେ ଅସାଧାରଣ ଶିବଭକ୍ତ । ସେ ଶତବାର ହୋମ କୁଣ୍ଡରେ ନିଜକୁ ଦଗ୍ଧ କରି ତଥା ଦଶବାର ନିଜର ଶିରଚ୍ଛେଦ କରି ଶିବଙ୍କ ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ହେତୁ ପୁନର୍ଜୀବନ ଲାଭ କରି-ଥିଲେ । ତାଙ୍କ ଉପରେ ତୁଷ୍ଟ ହୋଇ ଶିବ ତାଙ୍କୁ ଦର୍ଶନ ଦେଇଥିଲେ ।

ମଣିଧ୍ୱଜ ଗୃହବା ମାନେ ଶିବଙ୍କ ତ୍ରିଶୂଳ ଆସି ତାଙ୍କ ଶତ୍ରୁମାନଙ୍କୁ ନିଧନ କରୁଥିଲା । ସେ ପାଶୁପତ ଅସ୍ତ୍ର ମଧ୍ୟ ଲାଭ କରିଥିଲେ । ସେ ପ୍ରାର୍ଥନା କଲେ ସ୍ୱୟଂ ଶିବ ଆସି ତାଙ୍କ ତରଫରୁ ତାଙ୍କ ଶତ୍ରୁମାନଙ୍କ ସହ ଲଢ଼ିବେ, ଏ ପ୍ରତିଶ୍ରୁତି ତାଙ୍କୁ ମିଳିଥିଲା । ତେଣୁ ଜୀବନରେ କେହି ତାଙ୍କୁ ପରାସ୍ତ କରିପାରିବେ ନାହିଁ— ଏ ଗର୍ବ ତାଙ୍କର ଥିଲା ।

ଶିବଙ୍କ ପ୍ରତି ତାଙ୍କ ଅତ୍ୟନ୍ତ ଅନୁରକ୍ତିର ଏକ ଭୁଲ ଦିଗ ମଧ୍ୟ ଥିଲା । ତାହା ହେଲା, ସେ ନିଜ ରାଜ୍ୟରୁ ଅନ୍ୟ ସମସ୍ତ ଦେବଦେବୀଙ୍କ ପୂଜାକୁ ଉଠାଇ ଦେଇ ଥିଲେ । କେବଳ ଶିବ ମନ୍ଦିରମାନ ଛାଡ଼ି ଅନ୍ୟସବୁ ମନ୍ଦିର ଧୂଳିସାତ୍ କରିଦେଇଥିଲେ । ଅତ୍ୟାଚାରିତ ହୋଇ ଅନ୍ୟ ଧରଣର ଭକ୍ତମାନେ ଅଯୋଧ୍ୟା ପଳାଇ ରାମଙ୍କ ଶରଣାପନ୍ନ ହେଲେ । ରାମ ସେମାନଙ୍କୁ ଅଭୟ ଦେଇ ନିଜ ରାଜ୍ୟରେ ରଖିଲେ ଏବଂ ଶୀଘ୍ର ଯେ ମଣିଧ୍ୱଜଙ୍କ ଗର୍ବ ଖର୍ବ ହେବ, ସେ ବିଷୟରେ

ଅଶ୍ୱମେଧ ଯଜ୍ଞର ସମାପ୍ତି



ସେମାନଙ୍କୁ ସେ ନିଶ୍ଚିତ ଭରସା ଦେଲେ ।

ବହୁ ରାଜ୍ୟ ପରିକ୍ରମା ଶେଷ କରି ରାମଙ୍କ ଯଜ୍ଞାଶ୍ୱ ଯାଇ ଯେମିତି ମଣିଧ୍ୱଜଙ୍କ ରାଜ୍ୟରେ ପହଞ୍ଚିଛି, ମଣିଧ୍ୱଜ ତାକୁ ଧରିନେଇ ନିଜ ଅଶ୍ୱଶାଳାରେ ବାନ୍ଧି ରଖିଲେ । ଲକ୍ଷ୍ମଣ ମଣିଧ୍ୱଜ ପାଖକୁ ଦୂତ ପଠାଇଲେ । ଦୂତ ଯାଇ କହିଲା, ଯଜ୍ଞାଶ୍ୱ ଲକ୍ଷ୍ମଣଙ୍କୁ ପ୍ରତ୍ୟର୍ପଣ କରି ରାମଙ୍କ ସହ ମୈତ୍ରୀ ସ୍ଥାପନ କରିବା ମଣିଧ୍ୱଜଙ୍କ ପକ୍ଷରେ ଶୁଭଙ୍କର ହେବ । କିନ୍ତୁ ଅହଂକାରୀ ମଣିଧ୍ୱଜ ଦୂତ ପିଠିରେ ତ୍ରିଶୂଳ ଉତ୍ତପ୍ତ କରି ଚେଙ୍କା ଦେଇ କହିଲେ, "ତୁମ ରାମଙ୍କୁ ଯାଇ ଜଣାଇ ଦିଅ, ସେ ରାବଣଙ୍କ ଭଳି କେତେ ଶିବଭକ୍ତଙ୍କୁ ବିନାଶ କରିଛନ୍ତି । ତେଣୁ ତାଙ୍କୁ ଧରି ଆଣି ମୁଁ ଯଦି ଭୈରବ ମୂର୍ତ୍ତି ଆଗରେ ବଳି ଦେବି, ତେବେ ତାଙ୍କୁ ଠିକ୍ ଦଣ୍ଡ ମିଳିବ । ରାମଙ୍କୁ ଯାଇ କହିଦିଅ, ଜଣେ ଛାଡ଼ି ଶହେ ରାମ ଆସିଲେ ବି ମୋର କିଛି କରିପାରିବେ ନାହିଁ ।"

ସେ ଯାଏ ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନଙ୍କୁ ସେଭଳି କ୍ରୂର ଭାବରେ କେହି ଆହ୍ୱାନ ଜଣାଇ ନ ଥିଲେ । ସେମାନେ ତେଣୁ ମଣିଧ୍ୱଜ ସହ ଲଢ଼ିବା ନିମନ୍ତେ ପ୍ରସ୍ତୁତ ହୋଇ ଗଲେ । ଲକ୍ଷ୍ମଣଙ୍କ ଶଙ୍ଖଧ୍ୱନିରେ ଚତୁର୍ଦ୍ଦିଗ ମୁଖରିତ ହେଲା । ଭରତ, ଶତ୍ରୁଘ୍ନ ଏବଂ ସେମାନଙ୍କ ସୈନ୍ୟବାହିନୀଙ୍କ ହୁଙ୍କାର ତଥା ପ୍ରଚଣ୍ଡ ଆକ୍ରମଣରେ ତ୍ରସ୍ତ ହୋଇ ମଣିଧ୍ୱଜ ଶିବଙ୍କ ତ୍ରିଶୂଳକୁ ଆହ୍ୱାନ କଲେ ।

ଗୁହୁଁ ଗୁହୁଁ ମଣିଧ୍ୱଜଙ୍କ ପୂଜା ମନ୍ଦିର ଭିତରୁ ବିଦ୍ୟୁତ୍ ଗତିରେ ତ୍ରିଶୂଳ ବାହାରି ଲକ୍ଷ୍ମଣଙ୍କ ଆଡ଼କୁ ଧାବମାନ ହେଲା । ସେତିକିବେଳେ ହନୁମାନ ଆସି ଲକ୍ଷ୍ମଣଙ୍କ ଆଗରେ ପହଞ୍ଚିଗଲେ ଓ ଲକ୍ଷ୍ମଣଙ୍କୁ ସଂହାର କରିବାକୁ ଧାବମାନ ତ୍ରିଶୂଳକୁ ସେ ଚଟାପଟ୍ ଧରିନେଲେ । ହାତୀ ଯେପରି ଅବଲୀଳା କ୍ରମେ ନିଜ ଶୁଣ୍ଢ ଦ୍ୱାରା ଆଖୁ ଉପାଡ଼ ପକାଏ, ସେ ସେହିପରି ଭାବରେ ତ୍ରିଶୂଳକୁ ଧରି ପକାଇ ଗମ୍ଭୀର ଭାବରେ ଠିଆ ହୋଇ ରହିଲେ ।

ହନୁମାନଙ୍କର ସେ ଗମ୍ଭୀର ମୂର୍ତ୍ତି ଦେଖି ମଣିଧ୍ୱଜ ତାଙ୍କୁ ଭ୍ରମରେ ଶିବ ବୋଲି ମନେ କଲେ ଓ ତାଙ୍କୁ ଶ୍ରଦ୍ଧାଭରେ ପ୍ରଣାମ କରିବାକୁ ଉଦ୍ୟତ ହେଲେ । ସେତେବେଳକୁ ଅଟ୍ଟହାସ୍ୟ କରି ହନୁମାନ କହିଲେ "ଆରେ, ତୁମେ ମୋତେ ଶିବ ବୋଲି ଭାବିଲ କି ? ମୁଁ ହନୁମାନ ମାତ୍ର ! ଶ୍ରୀରାମଚନ୍ଦ୍ରଙ୍କର ଜଣେ ସେବକ ।" ଏହା କହି ସେ ଗଦା ଉଠାଇ ମଣିଧ୍ୱଜଙ୍କୁ ଆକ୍ରମଣ କଲେ । ମଣିଧ୍ୱଜ ଠିକ୍ ସମୟରେ ଦୂରକୁ ପଳାଇ ବର୍ତ୍ତିଗଲେ ଏବଂ ବିସ୍ମୟଭରେ ହନୁମାନଙ୍କୁ ଲକ୍ଷ୍ୟ କଲେ । ସେଭଳି ବୀର ମୂର୍ତ୍ତି ସେ ଜୀବନରେ ଦେଖି ନ ଥିଲେ । ହନୁମାନଙ୍କ ନୟନଯୁଗଳ ଦାଉ ଦାଉ ଅଗ୍ନି ଭଳି ଜଳୁ ଥିଲା । ମଣିଧ୍ୱଜଙ୍କର ଧାରଣା ହେଲା, ତାଙ୍କ ମୃତ୍ୟୁ ନିଶ୍ଚିତ । ତେବେ ପଛଘୁଞ୍ଚା ନ ଦେଇ ସେ ପାଶୁପତ ଅସ୍ତ୍ରକୁ ସ୍ମରଣ କଲେ ଓ ମନ୍ତ୍ର ଜପକରି ପାଶୁଶକ୍ତି ସଞ୍ଚାରିତ ଶର ପ୍ରୟୋଗ କଲେ ।

ପାଶୁପତ ଅସ୍ତ୍ରର ତେଜରେ ସାରା ଅଞ୍ଚଳ ଝଲସି ଉଠିଲା । ସେ ଦ୍ୟୁତି ଓ ଶବ୍ଦରେ ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ତଥା ତାଙ୍କ ସୈନ୍ୟବାହିନୀ ଚେତା ହରାଇ ତଳେ ପଡ଼ିଗଲେ । ହନୁମାନ କିନ୍ତୁ ରାମ ନାମ ସ୍ମରଣ କରି ଛାତି ଫୁଲାଇ ସେ ଅସ୍ତ୍ରର ଗତି ପଥରେ ଠିଆ ହେଲେ । ଅସ୍ତ୍ର ଆସି ତାଙ୍କ ବକ୍ଷ ସ୍ପର୍ଶ କରିବାର ଦେଖାଗଲା । ତା'ପରେ ତାହା ତାଙ୍କ ଦେହରେ ବିଲୀନ ହୋଇଗଲା । ହନୁମାନ ରହିଁ ରହିଁ ଗଦା





ମାଡ଼ରେ ମଣିଧ୍ୱଜର ରଥକୁ ଚୂର୍ଣ୍ଣ କରିଦେଲେ । ମଣିଧ୍ୱଜ ପଳାଇ ଯାଇ ନିଜ ପୂଜା ଗୃହ ମଧ୍ୟରେ ପ୍ରବେଶ କରି ନିଜ ଆରାଧ୍ୟଙ୍କୁ ସ୍ତବ କରି କହିଲେ "ହେ ଶିବ ! ଏବେ ପ୍ରତ୍ୟକ୍ଷ ହୁଅନ୍ତୁ ।"

ସେ ଶୁଣିଲେ ଶିବଙ୍କ ବାଣୀ : "ଇଏ କ'ଣ, ମଣିଧ୍ୱଜ ? ତୁମେ ପରା ଶହେ ରାମଙ୍କୁ ଅକ୍ଳେଶରେ ହରାଇ ଦେବ ବୋଲି ଆସ୍ଫାଳନ କରୁଥିଲ ? ଦେଖିବା ବେଳକୁ ଜଣେ ମାତ୍ର ରାମଙ୍କ ସେବକ ଆଗରେହିଁ ତିଷ୍ଠିପାରୁ ନାହିଁ ? ହେଲା, ଏଥର ଯାଇ ଯୁଦ୍ଧ କର । ମୁଁ ତୁମ ସହ ରହିବି ।"

ନିଜ ପ୍ରତିଶ୍ରୁତି ଅନୁସାରେ ମଣିଧ୍ୱଜ ଯୁଦ୍ଧ କ୍ଷେତ୍ରକୁ ଆସିବା ମାତ୍ରେ ତା' ଆଗରେ ଶିବ ଆବିର୍ଭୂତ ହୋଇ ହନୁମାନଙ୍କୁ ସାମ୍ନା କଲେ । ସେ ତାଙ୍କ ନନ୍ଦୀ ଉପରେ ବସି ଆସିଥିଲେ । ହନୁମାନ ତାଙ୍କୁ ଦେଖି କହିଲେ, "ଆପଣ ଭଗବାନ ହୋଇ ପାରନ୍ତି, କିନ୍ତୁ ମୋର ଆପଣଙ୍କୁ ଭୟ କରିବାର ହେତୁ ନାହିଁ ।" ଏହା କହି ସେ ଶିବଙ୍କ ଆଡ଼କୁ ମାଡ଼ିଯିବାକୁ ବସନ୍ତେ ନନ୍ଦୀ ଭୟତ୍ରସ୍ତ ହୋଇ ଶିବଙ୍କୁ ତଳେ ପକାଇ-ଦେଇ ପଳାଇଗଲା ।

ଶିବ ଉଠି ଠିଆ ହୋଇ ହନୁମାନଙ୍କୁ କହିଲେ, "ତୁମେ ମୋ ତ୍ରିଶୂଳକୁ ଅକ୍ତିଆର କରିନେଲ; ପାଶୁପାତ ତୁମ ଭିତରେ ବିଲୀନ ହୋଇଗଲା । ମୋ ନିଜ ଛଡ଼ା ବିଷ୍ଣୁଙ୍କ ଛଡ଼ା ଏଭଳି କାମ ଆଉ କିଏ କପରି କରିବ ସେକଥା ମୁଁ ବୁଝି-ପାରୁ ନାହିଁ । ତୁମେ କିଏ ?"

"ଆପଣଙ୍କ ଭଳି ବା ବିଷ୍ଣୁଙ୍କ ଭଳି ମହାନ୍ ଈଶ୍ୱରଙ୍କ ସହ ମୋର ତୁଳନା କରିବା ବୃଥା । ମୁଁ ମାନବରୂପୀ ରାମଙ୍କ ଜଣେ ଭକ୍ତ । ମୁଁ ନିଜେ ଜାତିରେ ବାନର । ରାମଙ୍କ କୃପାରୁ ମୋ ଭିତରେ ଯେତିକି ବଳର ସଞ୍ଚାର ହୋଇଛି, ତାହା ଦ୍ୱାରା ମୁଁ ତାଙ୍କର ସେବା କରିଚାଲିଛି, ରାମ ଯେଉଁ ଅଶ୍ୱମେଧଯଜ୍ଞ କରିବାକୁ ବ୍ରତୀ ହୋଇଛନ୍ତି, ତାହା ଦ୍ୱାରା ପୃଥିବୀର ମଙ୍ଗଳ ହେବ । ତାଙ୍କ କାର୍ଯ୍ୟରେ କେହି ବାଧା ଦେଇ ପାରିବେ ନାହିଁ । ମଣିଧ୍ୱଜ ଆପଣଙ୍କ ଭକ୍ତ

ବୋଲାଇ ଅନ୍ୟମାନଙ୍କ ଉପରେ ଏତେ ଅତ୍ୟାଚାର କରୁଛ କିପରି ?" ହନୁମାନ ଗର୍ଜନ କରି ଏ ପ୍ରଶ୍ନ କଲେ ।

ଶିବ ଟିକିଏ ହସି କହିଲେ, "ଦେଖ, ଏଥର ମୁଁ ମୋ ତୃତୀୟ ନେତ୍ର ଖୋଲୁଛି । ନିଜକୁ ରକ୍ଷା କର ।"

"ଶୀଘ୍ର ଖୋଲନ୍ତୁ । ତା'ହେଲେ ଆପଣଙ୍କ ଭକ୍ତର ଆଖି ଖୋଲିବ ।" ହନୁମାନ କହିଲେ ।

ଶିବଙ୍କ ତୃତୀୟ ନେତ୍ରରୁ ପ୍ରଳୟଙ୍କରୀ ଅଗ୍ନି ହନୁମାନଙ୍କ ଆଡ଼କୁ ପ୍ରଧାବିତ ହେଲା । ହନୁମାନ ଡାହାଣ ହାତ ପ୍ରସାରିତ କରି ସେ ଅଗ୍ନିକୁ ଧରି ନେଲେ ଓ "ରାମାର୍ପଣମସ୍ତୁ" କହି ତାକୁ ଗଳାଧଃକରଣ କଲେ—ଯେପରି ଶିବ ଏକଦା ହଳାହଳ ପାନ କରିଥିଲେ ।

ଏଥର ଶିବ ମଣିଧ୍ୱଜଙ୍କୁ କହିଲେ, "ଦେଖିଲ ତ ? ମୁଁ କିଛି କରିପାରୁ ନାହିଁ । ଏହାର କାରଣ, ହନୁମାନ ମୋହରି ଅଂଶ ବିଶେଷ । ସେଥିପାଇଁ ମୋ ପ୍ରେରିତ ଅସ୍ତ୍ରମାନ ସେ ଅବଲୀଳା କ୍ରମେ ଆତ୍ମସ୍ଥ କରି ନେଉଛନ୍ତି । ତୁମେ ସବୁ କଥା ଭଲ ଭାବରେ ବୁଝିବାକୁ ଚେଷ୍ଟା କର । ନ ହେଲେ ମୋର ଭକ୍ତ ବୋଲାଇବ କିପରି ?" ଏହା କହି ଶିବ ଅନ୍ତର୍ହିତ ହେଲେ ।

ହନୁମାନ ସଙ୍ଗେ ସଙ୍ଗେ ଉଡ଼ିଯାଇ ଦ୍ରୋଣଗିରିରେ ପହଞ୍ଚି ସଞ୍ଜୀବକରଣୀ ନାମକ ଔଷଧ



ଗଛ ଉପାଡ଼ି ନେଇ ଆସିଲେ । ତାହା ଗୁଣରେ ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ଓ ସୈନ୍ୟଦଳ ଜ୍ଞାନ ଫେରି ପାଇଲେ ।

ମଣିଧ୍ୱଜଙ୍କ ଆଖି ଖୋଲିଲା । ସେ ବୀର-ହନୁମାନଙ୍କ ଆଗକୁ ଆସି ପ୍ରଣାମ କଲେ ।

ହନୁମାନ ମଣିଧ୍ୱଜଙ୍କୁ କହିଲେ, "ନିଜ ଗର୍ବ ଓ ଔଦ୍ଧତ୍ୟ ଯୋଗୁଁ ତୁମ ଭକ୍ତି କିପରି ଅକାମୀ ହୋଇଯାଇଛି ସେକଥା ଏଥର ବୁଝିଲ ତ ? ତୁମ ନିଜ ଉଚ୍ଚାକାଂକ୍ଷା ପୂର୍ତ୍ତି କରିବା ପାଇଁ ତୁମେ ଈଶ୍ୱରଙ୍କ ସହାୟତା ଲୋଡ଼ିବ—ଏହା କେତେ ଦିନ ଚାଲିବ ? ତୁମ ଭଳି ଲୋକ ଦୈବପ୍ରଦତ୍ତ କୃପାର ଦୁରୁପଯୋଗ କରୁଥିବା



ହେତୁ ଅନେକ ଲୋକ ନାସ୍ତିକ ହୋଇଯାଆନ୍ତି । ଆଧ୍ୟାତ୍ମିକ ସତ୍ୟ ପୃଥିବୀରେ ବିକୃତ ହୋଇ ପ୍ରତିଭାତ ହୁଏ । ଯାହା ହେବାର ହେଲାଣି । ଏଣିକି ପ୍ରଜାମାନଙ୍କ ସୁଖବୃଦ୍ଧି ଦିଗରେ କାମ କର । ଭକ୍ତ ସଙ୍ଗେ ସଙ୍ଗେ ବିଜୟ ଗୌରବର ଅଧିକାରୀ ହୁଅ ।"

ମଣିଧ୍ୱଜ କହିଲେ, "ହେ ମହାତ୍ମା ! ମୁଁ ଆଜି ଏଭଳି ଅପମାନିତ ହୋଇ ନ ଥିଲେ ମୋର ଗର୍ବ ଖର୍ବ ହୋଇ ନ ଥାନ୍ତା । ମୋର ଆରାଧ୍ୟ ଦେବତା ଶିବ ଧୈର୍ଯ୍ୟ ଧରି ସୁଯୋଗ ଦେଖି ମୋତେ ଉପଯୁକ୍ତ ଶିକ୍ଷା ଦେଲେ । ଗୋଟିଏ ମୁହୂର୍ତ୍ତରେ ମୋର ଜ୍ଞାନୋଦୟ ହୋଇ ପାରୁଛି । ରାମଚନ୍ଦ୍ରଙ୍କର ଜୟ ହେଉ । ମୁଁ ଯାଇ ତାଙ୍କୁ ଭେଟିବି ଓ ମୋର ଔଦ୍ଧତ୍ୟ ପାଇଁ କ୍ଷମା ମାଗିବି । ଏଣିକି ଯେପରି ସେ ମୋତେ ତାଙ୍କ ମିତ୍ରମଣ୍ଡଳ ମଧ୍ୟରେ ଗଣିବେ ।"

ଏହାପରେ ମଣିଧ୍ୱଜ ଯଜ୍ଞାଶ୍ୱକୁ ଆଣି ଲକ୍ଷ୍ମଣଙ୍କ ହାତରେ ସମର୍ପଣ କଲେ ।

ଅଶ୍ୱକୁ ତା' ଇଚ୍ଛା ମୁତାବକ ନିଜ ବାଟରେ ଯିବାକୁ ଦେଇ ସମସ୍ତେ ତା'ର ଅନୁସରଣ କଲେ । ମଣିଧ୍ୱଜ ସେମାନଙ୍କୁ ବିଦାୟ ସମ୍ବର୍ଦ୍ଧନା ଜଣାଇଲେ ।

ମଣିଧ୍ୱଜଙ୍କର ଶୁଭ ଓ ଶୋଭା ନାମରେ ଦୁଇ ଜାଆଁଳା କନ୍ୟା ଥିଲେ । ଦୁଇ କନ୍ୟାଙ୍କୁ ଧରି ମଣିଧ୍ୱଜ ଅଯୋଧ୍ୟାରେ ପହଞ୍ଚିଲେ । ତାଙ୍କ ଅପରାଧ କ୍ଷମା କରିବାକୁ ରାମଙ୍କୁ ପ୍ରାର୍ଥନା ଜଣାଇ ସେ ଲବକୁଶଙ୍କ ସହ ନିଜର ଦୁଇ କନ୍ୟାଙ୍କୁ ବିଭାଦେବାର ପ୍ରସ୍ତାବ ଦେଲେ । ରାମ ସାନନ୍ଦେ ନିଜ ସ୍ୱୀକୃତି ଦେଲେ ଏବଂ ଅଶ୍ୱମେଧ ଯଜ୍ଞ ଅନୁଷ୍ଠିତ ହେବା ପରେ ପରେ ବିବାହର ଆୟୋଜନ କରିବାର ପ୍ରତିଶ୍ରୁତି ଦେଲେ ।

ମଣିଧ୍ୱଜଙ୍କ ଧର୍ମାନ୍ଧତା ଯୋଗୁଁ ଯେଉଁ ପ୍ରଜାମାନେ ମଣିପୁର ଛାଡ଼ି ଅଯୋଧ୍ୟା ପଳାଇ ଆସିଥିଲେ, ସେମାନଙ୍କୁ ସାଥିରେ ଧରି ମଣିଧ୍ୱଜ ସ୍ୱରାଜ୍ୟକୁ ବାହୁଡ଼ିଗଲେ । ତେଣିକି କାହାରି

ମୂଳାବିଧି ଉପରେ ଆଉ କୌଣସି କଣ୍ଟକଣା ରହିଲା ନାହିଁ ।

ରାମଙ୍କ ଯଜ୍ଞାଶ୍ୱ ପରିକ୍ରମା ଶେଷ କରି ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କଲା । ଏଥର ଯଜ୍ଞର ଆୟୋଜନ ହେଲା । କିଷ୍କିନ୍ଧ୍ୟାରୁ ସୁଗ୍ରୀବ ଦଳବଳ ସହ ଆସିଲେ; ଲଙ୍କାରୁ ଆସିଲେ ବିଭୀଷଣ; ମଣି-ପୁରରୁ ମଣିଧ୍ୱଜଙ୍କ ସମେତ ବହୁ ରାଜ୍ୟର ବହୁ ରାଜା ଆସି ଉପସ୍ଥିତ ହେଲେ । ସେମାନେ ସାଥିରେ ଆଣିଥାନ୍ତି ବିପୁଳ ଧନରତ୍ନ । ବିଭୀଷଣ ଆଣିଥିଲେ ଥଳ ଥଳ ମୁକ୍ତା । ସୁଗ୍ରୀବ ଆଣି-ଥିଲେ ପ୍ରଚୁର ସୁନା ସମେତ ବିବିଧ ରତ୍ନ । ମଣିଧ୍ୱଜ ଆଣିଥିଲେ ମରକତ, ମାଣିକ ଓ ରେଶମ ବସ୍ତ୍ର । ଆହୁରି କେତେ ରାଜା କେତେ ମୂଲ୍ୟବାନ ବସ୍ତୁମାନ ଆଣିଥା'ନ୍ତି । ଅଯୋଧ୍ୟାର ରାଜକୋଷ ଉଚ୍ଛୁଳି ଉଠିଲା ।

ସବୁଦେଶରୁ ଯଥୋଚିତ ସମ୍ବର୍ଦ୍ଧନା ଲଭି କରି ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ ସସୈନ୍ୟେ ବିଜୟୀ ରୂପେ ଅଯୋଧ୍ୟାକୁ ଫେରି ଆସିଥା'ନ୍ତି । ପଛେ ପଛେ ଆସି ପହଞ୍ଚିଲେ ହନୁମାନ ଏବଂ ଋଷିବୃନ୍ଦ—ଭରଦ୍ୱାଜ, ଗୌତମ, ଅତ୍ରି, ଅଗସ୍ତ୍ୟ ଇତ୍ୟାଦି ।

ରାମଙ୍କ ଶାସ୍ତ୍ର-ଗୁରୁ ବିଶ୍ୱାମିତ୍ର ମଧ୍ୟ ଆସିଲେ ଓ ରାମ ତାଙ୍କୁ ହାର୍ଦ୍ଦିକ ସମ୍ବର୍ଦ୍ଧନା ଜଣାଇଲେ ।

ବିରାଟ ସମାବେଶ ଓ ଉତ୍ସବ ଭିତରେ ଅଶ୍ୱ-ମେଧ ଯଜ୍ଞ ସମାହିତ ହେଲା । ପ୍ରତି ପରିବାରକୁ ରାମ ଧନଧାନ୍ୟ ଉପହାର ପଠାଇଲେ । ନାରୀ-ମାନଙ୍କ ଭିତରେ ବଣ୍ଟନ କରାଗଲା ନାନାବିଧ ଅଳଙ୍କାର ଓ ରତ୍ନ । ପ୍ରଜାଙ୍କ ହିତକାରୀ ନାଗରିକମାନଙ୍କୁ ଦିଆଗଲା ପୁରସ୍କାର ତଥା ସମ୍ମାନ ।

ସମବେତ ଅତିଥିମାନେ ତତ୍ପରେ ରାଜା ମଣିଧ୍ୱଜଙ୍କ ନିମନ୍ତ୍ରଣ ରକ୍ଷା କରିବାକୁ ମଣିପୁର ଗଲେ । ସେଠାରେ ଶୁଭ୍ର ସହିତ କୁଶଙ୍କର ଏବଂ ଶୋଭା ସହିତ ଲବଙ୍କର ବିବାହ ଅନୁଷ୍ଠିତ ହେଲା । ସେହି ଅବସରରେ ନିଜ ରାଜ୍ୟ ମଣିଧ୍ୱଜ ଲବକୁଶଙ୍କୁ ସମର୍ପଣ କରିବାର ସିଦ୍ଧାନ୍ତ ଜଣାଇଲେ । କିଛିଦିନ ଅନ୍ତେ ସେ ତପସ୍ୟା ପାଇଁ ଅରଣ୍ୟ ଅଭ୍ୟନ୍ତରକୁ ଚାଲିଗଲେ ।



# ରାଜା ଓ ତପସ୍ୱୀ



ରାଜା ବଡ଼ ନା ତପସ୍ୱୀ ବଡ଼ । ହଜାର ହଜାର ବର୍ଷ ତଳେ ଥରେ ଏହି ପ୍ରଶ୍ନ ଉପରେ ବିବାଦ ଉପୁଜିଥିଲା । ସେଥର, ଏକ ଅପ୍ରଶସ୍ତ ପଥରେ ଯାଉଥିଲେ ରାଜା ସୌଦାସ । ବିପରୀତ ଦିଗରୁ ଆସୁଥିଲେ ଜଣେ ତରୁଣ ତପସ୍ୱୀ, ଶକ୍ତି ।



"ମୁଁ ରାଜା । ମୋତେ ବାଟ ଦିଅ ।" କହିଲେ ସୌଦାସ । "ଜଣେ ତପସ୍ୱୀଙ୍କୁ ବାଟ ଛାଡ଼ିବା ତୁମର କର୍ତ୍ତବ୍ୟ ନୁହେଁ କି?" କ୍ରୁଦ୍ଧ କଣ୍ଠରେ ପଚାରିଲେ ଶକ୍ତି । ରାଜା ରାଗିଯାଇ ତପସ୍ୱୀଙ୍କୁ ଚଢ଼ାଇଲେ ମାଡ଼ ।



"ତମେ ରାଜା ହେବା ତ ଦୂରର କଥା, ମଣିଷ ପଦବାଚ୍ୟ ହେବାର ବି ଯୋଗ୍ୟ ନୁହଁ । ତମର ଆସୁରିକ କ୍ରୋଧ ତମକୁ ଅସୁରରେ ପରିଣତ କରୁ ।" ତରୁଣ ତପସ୍ୱୀ ଏହି ଅଭିଶାପ ଦେଇ ଚାଲି-ଗଲେ ।



ଗଛ ଉପରେ ବସି ସବୁ ଶୁଣୁଥିଲା ଗୋଟିଏ ପିଶାଚ । ଋଷିଙ୍କ ଅଭିଶାପ ତାକୁ ସାହାଯ୍ୟ କରିବ ଜାଣି ସେ ତତ୍‌କ୍ଷଣାତ୍ ରାଜାଙ୍କ ଉପରେ ସବାର୍ ହେଲା । ରାଜା ଯେତେ ଚାହିଁଲେ ବି ତା' କବଳରୁ ମୁକ୍ତ ରହି ପାରିଲେ ନାହିଁ ।



ରାଜା ଦୌଡ଼ିବାକୁ ଲାଗିଲେ । ତାଙ୍କ ଚେହେରା ବଦଳି ଯିବାକୁ ଲାଗିଲା । ସେ ଦିଶିଲେ ଭୟଙ୍କର । ସେ ଯେତେବେଳେ ବଣର କେନ୍ଦ୍ର ଭାଗରେ ପହଞ୍ଚିଲେ, ସେ ସେତେବେଳକୁ ପୂରା ଦାନବ ବନିଗଲେଣି ।



ସେଠାରେ ଥିଲା ଶକ୍ତି ଋଷିଙ୍କ କୁଟୀର । ସେ ଶବ୍ଦ ଶୁଣି ବାହାରି ଆସିବା ମାତ୍ରେ ଭୀଷଣ ଦାନବରୂପୀ ରାଜା ତାଙ୍କୁ ଧରିନେଲେ ଓ ଅଚରେ ତାଙ୍କୁ ଉଦରସାତ୍ କଲେ ।

ସେଥିକରେ ଦାନବରୂପୀ ରାଜାଙ୍କ କ୍ରୋଧ ପ୍ରଶମିତ ହେଲ ନାହିଁ । ବଣ ଭିତରେ ଅନ୍ୟତ୍ର ରହୁଥିଲେ ଶକ୍ତିଙ୍କର ଶହେ ଭାଇ । ସେ ସମସ୍ତଙ୍କୁ ଧରି ସେ ଆହାର କଲେ । କେହି ତାହା ପାଇଲେ ନାହିଁ ।





ଶକ୍ତି ଓ ତାଙ୍କ ଶହଭାଇ ଋଷି ବଶିଷ୍ଠଙ୍କ ପୁତ୍ର ଥିଲେ । ବଶିଷ୍ଠ ଦାନବ କବଳରେ ସେମାନଙ୍କ ମୃତ୍ୟୁ ସମ୍ବାଦ ପାଇ ପ୍ରାଣ ବିସର୍ଜନ ଦେବାକୁ ସ୍ଥିର କଲେ ।



ବଶିଷ୍ଠ ଗୋଟିଏ ନଦୀ ତୀରରେ ପହଞ୍ଚିଲେ ଓ ପ୍ରାଣ ହାରିବା ପାଇଁ ନଦୀ ଗର୍ଭକୁ ଡେଇଁ ପଡ଼ିଲେ । କିନ୍ତୁ ନଦୀ ତତ୍‌କ୍ଷଣାତ୍ ଶତଧା ବିଭକ୍ତ ହୋଇଗଲା । ଫଳରେ ପାଣିର ଗମ୍ଭୀରତା ରହିଲା ନାହିଁ । ବଶିଷ୍ଠ ବୁଡ଼ି ପାରିଲେ ନାହିଁ । ଶତଧା ବିଭକ୍ତ ହେବାରୁ ନଦୀର ନାମ ହେଲା ଶତଦ୍ରୁ ।



ବଶିଷ୍ଠ ଅନ୍ୟ ଏକ ନଦୀ କୂଳରେ ପହଞ୍ଚି ପାଣିକୁ ଡେଇଁଲେ । ପହଁର ପାରିବେ ନାହିଁ ଯେମିତ, ସେଥିପାଇଁ ସେ ନିଜର ଦୁଇ ହାତ ବାନ୍ଧି ରଖିଥିଲେ । କିନ୍ତୁ ନଦୀ-ମାତା ସ୍ୱୟଂ ବନ୍ଧନ ଖୋଲି ଦେଇ ତାଙ୍କୁ କୂଳକୁ ନେଇଗଲେ । ବଶିଷ୍ଠଙ୍କୁ ପାଶ-ମୁକ୍ତ କରିଥିବାରୁ ଏ ନଦୀର ନାମ ହେଲା ବିପାଶା ।



ଫେରିବା ପଥରେ ବଶିଷ୍ଠ ହଠାତ୍ ପଛରୁ ବେଦଧ୍ୱନି ଶୁଣି ଗୁହିଁ ଦେଖନ୍ତି ତ ତାଙ୍କ ପୁତ୍ରବଧୂ ଶକ୍ତିଙ୍କ ସ୍ତ୍ରୀ ତାଙ୍କୁ ଅନୁସରଣ କରୁଛନ୍ତି । ବଧୂଙ୍କ ଗର୍ଭରେ ଥିବା ଶକ୍ତିଙ୍କ ପୁତ୍ର ବେଦ ପାଠ କରୁଛନ୍ତି । ତାଙ୍କ ବଂଶ ଲୋପ ହୋଇ ନାହିଁ ଜାଣି ବଶିଷ୍ଠ ଆଶ୍ୱସ୍ତ ହେଲେ ।



ଦାନବରୂପୀ ସୌଦାସ ଅବଶେଷରେ ବଶିଷ୍ଠଙ୍କୁ ଖାଇବା ପାଇଁ ପହଞ୍ଚିଲେ । ବଶିଷ୍ଠ ତପଃଶକ୍ତି ଦ୍ୱାରା ତାଙ୍କୁ ଧ୍ୱଂସ କରିଦେଇ ପାରିଥାନ୍ତେ । କିନ୍ତୁ ତାହା ନକରି ସେ ତପଃଶକ୍ତି ଦ୍ୱାରା ତାଙ୍କୁ ଶାପ ମୁକ୍ତ କଲେ । ସୌଦାସ ନିଜ ମାନବ-ରୂପ ଫେରି ପାଇଲେ । ବଶିଷ୍ଠ ନିଜ କ୍ଷମା ଗୁଣ ଓ ଶକ୍ତି ଦ୍ୱାରା ପ୍ରମାଣ କଲେ ଯେ ରାଜା ନୁହେଁ, ତପସ୍ୱୀହିଁ ବଡ଼ ।

# କାହାଣୀ-ଶିରୋନାମା-ପ୍ରତିଯୋଗିତା

## ଏକ ଉପଯୁକ୍ତ ଶିରୋନାମା ଦେଇ ୨୫ ଟଙ୍କା ପୁରସ୍କାର-ବିଜୟୀ ହୁଅନ୍ତୁ

ଭୋର ହୋଇ ଆସୁଥାଏ । କିନ୍ତୁ ସେଯାଏ ଲୋକଙ୍କ ଚଳପ୍ରଚଳ ଆରମ୍ଭ ହୋଇ ନ ଥାଏ ।

ସହର ଉପାନ୍ତରେ ପଥ ପ୍ରାନ୍ତରେ ଜଣେ ସନ୍ନ୍ୟାସୀ ସମାଧିସ୍ଥ ହୋଇ ବସିଥା'ନ୍ତି । ଜଣେ ଚୋର ଘରକୁ ଫେରିବା ବାଟରେ ତାଙ୍କୁ ଦେଖି କଣ୍ଠସ୍ୱର ଧୀର କରି କହିଲା, "ଆରେ ବୁଢ଼ା ! ରାତି-ସାରା ଚୋରି କଲୁ ତ କଲୁ । ଏବେ ଏଠାରେ କାହାକୁ ଅପେକ୍ଷା କରିଛୁ ? ଚାଲ, ଘରେ ଯାଇ ଶୋଇପଡ଼ ।" ଏହା କହି ସେ ଚାଲିଗଲା ।

କିଛି ସମୟ ପରେ ଜଣେ ମାତାଲ୍ ସେଠାରେ ପହଞ୍ଚି ସନ୍ନ୍ୟାସୀଙ୍କୁ ଲକ୍ଷ୍ୟ କରି କହିଲା, "ପିଇଲୁ ତ ପିଇଲୁ, ଏକେବାରେ ଚଳତ୍‌ଶକ୍ତିହୀନ ହୋଇ ପଡ଼ିଲୁ !" ଏହା କହି ସେ ଚାଲିଗଲା ।

କିଛି ସମୟ ପରେ ଜଣେ ସାଧୁ ଶିଷ୍ୟବର୍ଗଙ୍କ ସହ ସେ ବାଟରେ ଯାଉଁ ଯାଉଁ ସନ୍ନ୍ୟାସୀଙ୍କୁ ଦେଖି ବୁଝିଲେ ସେ ଜଣେ ସମାଧିସ୍ଥ ଯୋଗୀ । ସେ ସେଇଠାରେ ଶିଷ୍ୟବର୍ଗଙ୍କୁ ଧରି ରହିଲେ—ଯେମିତି ସନ୍ନ୍ୟାସୀଙ୍କର କେହି କୌଣସି ଅନିଷ୍ଟ କରି ପାରିବେ ନାହିଁ ।

  

ଉପରୋକ୍ତ କାହାଣୀ ପାଇଁ ଉପଯୁକ୍ତ ଶିରୋନାମାଟିଏ ଠିକ୍ କରି ପୋଷ୍ଟକାର୍ଡ଼ରେ ଲେଖି "ଶିରୋନାମା ପ୍ରତିଯୋଗିତା", ଜହ୍ନମାମୁଁ, Chandamama Buildings, 2 & 3 Arcot Road, Madras-600026 ଠିକଣାରେ ଜୁଲାଇ ୨୦ ତାରିଖ ସୁଦ୍ଧା ପଠାନ୍ତୁ । ତେବେ, ଫଟୋ ପରିଚୟ ପ୍ରତିଯୋଗିତା ପାଇଁ ଲେଖା ଏକା କାର୍ଡ଼ରେ ପଠାଇବେ ନାହିଁ ।

ପ୍ରତିଯୋଗିତାର ଫଳ ସେପ୍ଟେମ୍ବର '୭୮ ସଂଖ୍ୟାରେ ପ୍ରକାଶ ପାଇବ ।

---

ମେ ପ୍ରତିଯୋଗିତାର ନିର୍ବାଚିତ ଶିରୋନାମା : "ତା' କହୁନ !"
ପୁରସ୍କାର ବିଜୟୀ : ବିନାୟକ ଦାଶ
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ ୨୫

## ପୁରସ୍କୃତ ପରିଚୟୋକ୍ତି ସେପ୍ଟେମ୍ବର ୧୯୭୮ ସଂଖ୍ୟାରେ ପ୍ରକାଶ ପାଇବ



C. K. Satyaraj



A. L. Syed

★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଶବ୍ଦ ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।

★ ଜୁଲାଇ ୧୫ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।

★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।

★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡ଼ରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲ୍ଡିଙ୍ଗ୍ସ, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ମେ ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : "ଫାଇଭ୍ କଟେ ଓ୍ୱାନ୍ ଟୁ ଏଇଟ — ହ୍ୟାଲୋ, ହ୍ୟାଲୋ ଲୁସି !"

ଦ୍ୱିତୀୟ ଫଟୋ : "ହଁ ଗାଳା ଗାଇ ଫାଷ୍ଟ ହୋଇଛ, ବାପା ହେବେ ଖୁବ ଖୁସୀ !"

ପୁରସ୍କାର ବିଜୟୀ : କୁମାରୀ ସୁଜାତା ମହାନ୍ତି, ଭୁବନେଶ୍ୱର ।

ବିଜୟିନୀଙ୍କୁ ଅଭିନନ୍ଦନ : ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 2 & 3, Arcot Road, Madras-600 026 (India). Controlling Editor : NAGI REDDI.